


ଅମର ଜବାନ ଜ୍ୟୋତି'ରେ ପ୍ରଧାନମନ୍ତ୍ରୀଙ୍କ ଶ୍ରଦ୍ଧାଞ୍ଜଳି • P.M. LAYING A WREATH AT THE AMAR JAWAN JYOTI.

ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ସହ ଭାରତର ପ୍ରଥମ ମହାକାଶଚାରୀ ଶ୍ରୀ ରାକେଶ ଶର୍ମା • RAJIB GANDHI WITH SRI RAKESH SHA



# ଉତ୍କଳ ପ୍ରସଙ୍ଗ

ଫାଲଗୁନ　୧୯୦୬ ଶକାବ୍ଦ　୪୧ ଭାଗ　୭ମ ସଂଖ୍ୟା　ଫେବୃଆରୀ ୧୯୮୫



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,

ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ ୧୦.୦୦

ପ୍ରତି ଖଣ୍ଡ ୧.୦୦

ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

# ଉତ୍କଳ ପ୍ରସଙ୍ଗ

## ସୂଚୀପତ୍ର



ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ



# ଭାରତର ଅଖଣ୍ଡତା

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଆମର ପ୍ରିୟ ଜନ୍ମ ଭୂମି ଭାରତ ବର୍ଷ ସମସ୍ତଙ୍କର ଦେଶ । ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟିୟାନ ସମସ୍ତେ ଏ ଭାରତ ମାତାର ସନ୍ତାନ । ଆମେ ସମସ୍ତେ ଭାରତୀୟ । ଏଠି ସମସ୍ତେ ସମାନ । କେହି ଛୋଟ ନୁହେଁ କି କେହି ବଡ଼ ନୁହେଁ । ଏ ପବିତ୍ର ଦେଶରେ ସମସ୍ତଙ୍କର ଗର୍ବ ତଥା ଅଭିମାନର ସହିତ ରହିବାର ଅଧିକାର ଅଛି । ଆମର ମହାନ ଜାତୀୟତା ପାଇଁ ଆମେ ସମସ୍ତେ ଯଦି ସଂକଳ୍ପ ନେଇ, ଭାରତୀୟତାର ମହା ସ୍ରୋତରେ ସାମିଲ ହୋଇ କାର୍ଯ୍ୟ କରିବା, ତା' ହେଲେ ଇନ୍ଦିରାଜୀଙ୍କ ପ୍ରତି ଆମର ପ୍ରକୃତ ଶ୍ରଦ୍ଧାଞ୍ଜଳି ଜଣାଯାଇ ପାରିବ ।

ଜାତିର ଜନକ ମହାତ୍ମା ଗାନ୍ଧୀ ସାଂପ୍ରଦାୟିକ ବିଶବାଷ୍ପ ବିରୁଦ୍ଧରେ ଏ ଦେଶର ଏକତା ପାଇଁ ମହାନ ଆଦର୍ଶ ପାଇଁ ନିଜର ଜୀବନ ବଳିଦାନ କରିଛନ୍ତି । ସେହିପରି ଇନ୍ଦିରା ଗାନ୍ଧୀ ଦେଶର ଅଖଣ୍ଡତା ପାଇଁ, ଜାତୀୟ ଆଦର୍ଶ ପାଇଁ ଓ ମହତ୍ତ୍ୱ ପାଇଁ ନିଜର ଜୀବନ ବଳିଦାନ ଦେଲେ । ତାଙ୍କର ବିୟୋଗ ସମଗ୍ର ଦେଶରେ ଶୋକର ଛାୟା ଖେଳାଇ ଦେଇଛି । ମହାତ୍ମା ଗାନ୍ଧୀଙ୍କ ପରେ ଏ ଦେଶରେ ଏପରି ଶୋକର ଉଚ୍ଛ୍ୱାସ ବହି ନ ଥିଲା । ମହାତ୍ମା ଗାନ୍ଧୀ ଯେଉଁଥି ପାଇଁ ଜୀବନ ବଳି ଦେଇଥିଲେ, ଇନ୍ଦିରାଜୀ ମଧ୍ୟ ସେଇଥିପାଇଁ ତାଙ୍କର ଜୀବନ ବଳି ଦେଇଛନ୍ତି । ଇନ୍ଦିରାଜୀଙ୍କ ପରଲୋକରେ ଆମର ଶୋକ ସ୍ୱାଭାବିକ, ମାତ୍ର ଏହା ଯଥେଷ୍ଟ ନୁହେଁ । ଆମେ ସମସ୍ତେ ସଂକଳ୍ପ କରିବା ଉଚିତ ଯେ ଯେଉଁ ଆଦର୍ଶ ପାଇଁ ଇନ୍ଦିରାଜୀ ତାଙ୍କର ପ୍ରାଣ ବଳୀ ଦେଲେ, ସେ ଆଦର୍ଶକୁ ରକ୍ଷା କରିବା ପାଇଁ ଦରକାର ପଡ଼ିଲେ ଆମେ ସମସ୍ତେ ହସି ହସି ପ୍ରାଣପାତ କରିବା ।

ମହାତ୍ମା ଗାନ୍ଧୀ ଅହିଂସା ପାଇଁ ସଂଗ୍ରାମ କରିଥିଲେ, ଇନ୍ଦିରା ଗାନ୍ଧୀ ମଧ୍ୟ ହିଂସା ଓ ସନ୍ତ୍ରାସବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସେ ଚାହୁଁ ଥିଲେ, ଭାରତ ବର୍ଷର ଲୋକେ ଶାନ୍ତି ଓ ସଦ୍‌ଭାବରେ ରହନ୍ତୁ । ମତଭେଦ ହେବ, ମତଭେଦ ହେବା ସ୍ୱାଭାବିକ । ପରିବାରରେ ମତଭେଦ ଅଛି । ତେଣୁ, ଭାଇ ଭାଇ ଭିତରେ ମତଭେଦ ହେବା ଅସ୍ୱାଭାବିକ ନୁହେଁ । କିନ୍ତୁ ଯଦି ହିଂସାର ଆଶ୍ରୟ ନିଆଯାଏ, ତା' ହେଲେ ସାରା ଦେଶରେ ଯେଉଁ ହିଂସା ଜନ୍ମ ନେବ ତାକ କେହି ଦୂର କରି ପାରିବେ ନାହିଁ । ସେଥିପାଇଁ ଆମେ ସମସ୍ତେ ସତର୍କ ହେବା ଦରକାର । କେତେକ ହୀନ ବ୍ୟକ୍ତି ଏ ଦେଶର ଜାତୀୟତାକୁ ଦୁର୍ବଳ କରିବା ପାଇଁ ଚେଷ୍ଟା କରୁଛନ୍ତି । ସେମାନେ ଏ ଦେଶର ମର୍ଯ୍ୟାଦା ଓ ଆଦର୍ଶ ରକ୍ଷା କରିବାକୁ ଚାହୁଁ ନାହାନ୍ତି । ନା ନା ପ୍ରକାର ଗଣ୍ଡଗୋଳ ଭିଆଇ ହିଂସାର ବାତାବରଣ ସୃଷ୍ଟି କରିବା ପାଇଁ ଉଦ୍ୟମ କରୁଛନ୍ତି । ଆମେ ସମସ୍ତେ ବିଭେଦକାରୀ ଶକ୍ତି ବିରୁଦ୍ଧରେ, ବିଚ୍ଛିନ୍ନତାବାଦୀ ଶକ୍ତି ବିରୁଦ୍ଧରେ ଏକଜୁଟ ହେବା ଦରକାର । ଏ ଦେଶର ସ୍ୱାଧୀନତା, ଜାତୀୟତା ଓ ଅଖଣ୍ଡତା ରକ୍ଷା କରିବା ପାଇଁ ଅତୀତରେ ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟିୟାନ ଭାଇମାନେ ଯେପରି ଏକଜୁଟ ହୋଇ ପ୍ରାଣପାତ କରିଥିଲେ, ଆମେ ସମସ୍ତେ ଏ ଦେଶର ସ୍ୱାଧୀନତା, ଅଖଣ୍ଡତା, ଓ ଆଦର୍ଶ ରକ୍ଷା କରିବା ପାଇଁ ସଂକଳ୍ପ ନେବା ! ଇନ୍ଦିରାଜୀ ତାଙ୍କର ଜୀବନ ବଳିଦାନ ଦ୍ୱାରା କେବଳ ଏତିକି ଆମଠାରୁ ଚାହାନ୍ତି । ଯଦି ଆମେ ଏକଜୁଟ ହୋଇ କହିପାରିବା ଯେ, ଇନ୍ଦିରାଜୀ ! ତୁମର ମୃତ୍ୟୁ ପରେ ମଧ୍ୟ ଏ ଭାରତ ବର୍ଷ ଏକ ଓ ଅଖଣ୍ଡ ହୋଇ ରହିବ, ଏ ଭାରତ ବର୍ଷରେ କୌଣସି ବିଦ୍ୱେଷ ଏବଂ ଘୃଣାର ବାତାବରଣକୁ ଆମେ କେବେହେଲେ ପ୍ରଶ୍ରୟ ଦେବୁ ନାହିଁ; ତେବେ ତାଙ୍କର ସ୍ୱର୍ଗତ ଆତ୍ମା ପ୍ରକୃତରେ ସୁଖୀ ହେବ ।

ଓଡ଼ିଶା ହେଉଛି ଏକ ଧର୍ମ ଏବଂ ପରଂପରାର ରାଜ୍ୟ । ଏ ରାଜ୍ୟର ଧର୍ମ ଜଗନ୍ନାଥ ଧର୍ମ । ଜଗନ୍ନାଥ ଧର୍ମ ହେଉଛି ସମନ୍ୱୟର ଧର୍ମ.... । ଗୁରୁ ନାନକଜୀ ତାଙ୍କର ଯାତ୍ରା କାଳରେ ଓଡ଼ିଶା ଆସିଥିଲେ ଏବଂ ସେ ଜଗନ୍ନାଥଙ୍କର ଆରତୀ ଦେଖି 'ଗୁରୁ ଗ୍ରନ୍ଥ ସାହେବ' ରେ 'ଗଗନ ମେ ଥାଲ' ପ୍ରସିଦ୍ଧ ଭଜନ ରଚନା କରିଥିଲେ ବୋଲି ପ୍ରତିପାଦିତ ହୋଇଛି । ଗୁରୁ ନାନକଙ୍କର ବାଣୀ, ଆଦର୍ଶ ଓ ବାର୍ତ୍ତା ସମନ୍ୱୟତାର ପଥ ପ୍ରଦର୍ଶକ । ସେ ପ୍ରଚାର କରିଥିଲେ ଯେ କେହି ହିନ୍ଦୁ ନୁହେଁ, କେହି ମୁସଲମାନ ନୁହେଁ, ସମସ୍ତେ ହେଉଛନ୍ତି ଈଶ୍ୱରଙ୍କର ସନ୍ତାନ । ତାଙ୍କର ବାଣୀ ଓ ଆଦର୍ଶକୁ ଆମେ ସମସ୍ତେ ପାଳନ କରିବା ଦରକାର । ତାଙ୍କର ମହାନ୍ ବାଣୀ ମହାତ୍ମା ଗାନ୍ଧୀଙ୍କର ବାଣୀ, ତାଙ୍କର ବାଣୀ ଇନ୍ଦିରାଗାନ୍ଧୀଙ୍କର ବାଣୀ । ଏ ଭାରତ ବର୍ଷ ବର୍ଣ୍ଣ, ଧର୍ମ, ଓ ସଂପ୍ରଦାୟ ନିର୍ବିଶେଷରେ ଏକ । ଏ ଦେଶ ବିଶ୍ୱ ମାନବର ଦେଶ ।

ଏ ଭାରତବର୍ଷ, ଏ ଓଡ଼ିଶା ଆମ୍ଭମାନଙ୍କର ଏକ ସମନ୍ୱୟ ଭୂମି । ସବୁବେଳେ ଆମେ ସମସ୍ତେ ଏକାଠି ରହି ଏଠି ବଞ୍ଚି ଆସିଛେ ଭାଇଚାରାର ସହିତ, ବନ୍ଧୁତାର ସହିତ ଓ ମୈତ୍ରୀର ସହିତ । ଭବିଷ୍ୟତରେ ଆମ୍ଭେମାନେ ମଧ୍ୟ ଏହିପରି ଚଳିବା । କାରଣ ସାଂପ୍ରଦାୟିକ ସଦ୍‌ଭାବ ଓ ସଂପ୍ରୀତି ନ ରହିଲେ ଭାରତ ତଥା ଓଡ଼ିଶାର ସମୃଦ୍ଧି ହୋଇ ପାରିବ ନାହିଁ ।

(ଭୁବନେଶ୍ୱର ଗୁରୁଦ୍ୱାରଠାରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣରୁ)

ସ୍ୱର୍ଣ୍ଣମନ୍ଦିର, ଅମୃତସର ....





ସାଂପ୍ରଦାୟିକ ବିଦ୍ୱେଷ ନେଇ ସାମ୍ପ୍ରଦାୟିକତାର ମୁକାବିଲା କରିବା ଅର୍ଥ ବିଭେଦକାରୀ ଓ ବିଚ୍ଛିନ୍ନତାବାଦୀ ଶକ୍ତି-ମାନଙ୍କର ସହାୟତା କରିବା । ଦେଶର ଜନସାଧାରଣ ଓ ସରକାର ମିଳିତଭାବରେ ଏହି ଶକ୍ତିମାନଙ୍କର ଚକ୍ରାନ୍ତ ପଣ୍ଡ କରି ପାରିବେ । ଭାରତ ଗୋଟିଏ ଦେଶ । ଏହା ଆମ ସମସ୍ତଙ୍କର ।

ଶ୍ରୀ ରାଜୀବ ଗାନ୍ଧୀ

# ଡଃ. ସୁକର୍ଣ୍ଣୋ: ଇଣ୍ଡୋନେସିଆର ଜନକ

ଡା: ସତ୍ୟନାରାୟଣ ରାଜଗୁରୁ

ଇଣ୍ଡୋନେସିଆର ସୁନାମଧନ୍ୟ ନେତା ଡ଼ା. ସୁକର୍ଣ୍ଣୋ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କର ଜଣେ ଶ୍ରେଷ୍ଠ ବନ୍ଧୁରୂପେ ପରିଚିତ । ସୁକର୍ଣ୍ଣୋଙ୍କର ପିତା ଥିଲେ ଜାଭା ଦ୍ୱୀପର ଜଣେ ଶିକ୍ଷକ ଏବଂ ମାତା ବାଲିଦ୍ୱୀପର କନ୍ୟା । ସୁକର୍ଣ୍ଣୋ ଜାଭାରେ ୧୯୦୧ ସାଲ, ଜାନୁଆରୀ ୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାଲ୍ୟଶିକ୍ଷା ସେଠାର ଏକ ଉଚ୍ଚ ଆଭିଜାତ୍ୟ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ୟୁରୋପୀୟ ସ୍କୁଲରେ ସଂପନ୍ନ ହୋଇଥିଲା । ତଥାପି ସେ ନିଜେ ଗରିବ ସହପାଠୀମାନଙ୍କ ସଙ୍ଗେ ମିଶିବାକୁ ଭଲ ପାଉଥିଲେ ପୁଣି ଧନୀ ଓ ଗର୍ବୀ ଛାତ୍ରମାନଙ୍କଠାରୁ ଦୂରରେ ରହୁଥିଲେ । ମାଧ୍ୟମିକ ସ୍କୁଲରେ ପଢୁଥିଲାବେଳେ ନିଜକୁ 'ରିମା' ( Rima ) ଛଦ୍ମ ନାମ ଦେଇ କେତେକ ରାଜନୈତିକ ବିଷୟରେ ପ୍ରବନ୍ଧମାନ ଲେଖୁଥିଲେ । ପରିଶେଷରେ ସେ ବାନ୍ଦୁଙ୍ଗରେ ଥିବା ଇଞ୍ଜିନିୟରିଂ ସ୍କୁଲରୁ ସ୍ଥାପତ୍ୟ ଓ ପ୍ରାସାଦ ନିର୍ମାଣ ବିଦ୍ୟାରେ ଉତ୍ତୀର୍ଣ୍ଣ ହୋଇଥିଲେ । ବାନ୍ଦୁଙ୍ଗଠାରେ ଛାତ୍ରଥିବା ବେଳେ ସାଧାରଣ ପାଠକ ସଂଘ ('Algemeene Studdia Club') ରେ ଯୋଗଦେଲେ । ସେହି ସଂଘ ପକ୍ଷରୁ ତାଙ୍କ ଉଦ୍ୟମରେ ' Indonesia Muda ' ନାମକ ଗୋଟିଏ ପତ୍ରିକା ପ୍ରକାଶ କରାଗଲା । ୧୯୨୭ ସାଲ ଜୁଲାଇ ୪ ତାରିଖରେ ସୁକର୍ଣ୍ଣୋ ସେହି କ୍ଲବର ଅଧ୍ୟକ୍ଷ ଭାର ବହନ କଲେ । ତା ପରେ ସେ ତାଙ୍କ ସହକର୍ମୀମାନଙ୍କ ସଙ୍ଗରେ ମିଶି 'ଇଣ୍ଡୋନେସିଆ ଜାତୀୟ ସଂସଦ' (Partai National Indonesia) ନାମରେ ଗୋଟିଏ ରାଜନୈତିକ ଦଳ ସୃଷ୍ଟି କଲେ । ସେଥିରେ ସୁକର୍ଣ୍ଣୋ ନିଜେ ପ୍ରଥମ ଅଧ୍ୟକ୍ଷରୂପେ କାର୍ଯ୍ୟ କରନ୍ତି । ତାହାହିଁ ଇଣ୍ଡୋନେସିଆର ସର୍ବପ୍ରଥମ ସ୍ୱାଧୀନତା ପ୍ରୟାସୀ ସଂଘରୂପେ ପରିଚିତ ହୁଏ । ସେହି ଦଳର ମୁଖ୍ୟ ନୀତି ହେଲା, ସ୍ୱଦେଶୀ ଆନ୍ଦୋଳନ ଏବଂ ବିଦେଶୀ ବର୍ଜନ ତଥା ଡଚ୍ ସରକାରଙ୍କୁ ଅସହଯୋଗ । ତାଙ୍କ ଭାଷାରେ ଏହି 'ସ୍ୱାଧୀନତାର' ନାମ ହେଉଛି ମେର୍ଦେକା ( Merdeka ) ଏଠାରେ କହିବା ଉଚିତ୍ ଯେ, ଇଂରାଜୀମାନେ ଭାରତରେ ଯେପରି ଶାସନ କାର୍ଯ୍ୟ ଚୁଲାଇବାକୁ ମୁଖ୍ୟତଃ ଇଂରାଜୀ ଭାଷା ବ୍ୟବହାର କରୁଥିଲେ, ସେପରି ଇଣ୍ଡୋନେସିଆରେ ଡଚ୍‌ମାନେ ମଧ୍ୟ ତାଙ୍କ ଭାଷା ସେଠାରେ ପ୍ରବର୍ତ୍ତିତ କରିଥାନ୍ତି । କିନ୍ତୁ ସ୍ୱାଧୀନତାକାମୀ ସୁକର୍ଣ୍ଣୋ ତାଙ୍କ ଦଳ ପକ୍ଷରୁ ଯେତେସବୁ ସଭା ସମିତି ହେଉଥିଲା ସେଥିରେ ଡଚ୍ ଭାଷା ପରିବର୍ତ୍ତେ ଇଣ୍ଡୋନେସିଆରେ ପ୍ରଚଳିତ ଭାଷାହିଁ ବ୍ୟବହାର କରିବାକୁ ଲାଗିଲେ । ଭାରତରେ 'ସ୍ୱରାଜ୍ୟ' ପ୍ରତୀକ 'ଇଣ୍ଡୋନେସିଆ' ରାଜ୍ୟ" ଧ୍ୱନୀ ସେହି ସଭା ସମିତିମାନଙ୍କରେ ଶୁଭୁଥିଲା ।

ତତ୍କାଳୀନ ନାଦରଲ୍ୟାଣ୍ଡର ଇଣ୍ଡିକ୍ ସରକାର ଇଣ୍ଡୋନେସିଆର ସେହି ସ୍ୱାଧୀନତା ଆନ୍ଦୋଳନରେ ଚମତ୍କୃତ ହେଲେ । କାରଣ, ସେଠାର ସ୍ୱାଧୀନତା ପ୍ରୟାସ କ୍ରମେ ବୃଦ୍ଧିଲାଭ କରୁଥିଲା । ଏଣୁ ଡିସେମ୍ବର ୧୯୨୯ ମସିହାରେ ସୁକର୍ଣ୍ଣୋ ଓ ତାଙ୍କ ଦଳର ମୁଖ୍ୟ ତିନି ଜଣଙ୍କୁ ବନ୍ଦୀ ଗୃହରେ ନିକ୍ଷେପ କରାଗଲା । ତାଙ୍କ ବିରୁଦ୍ଧରେ ଅଭିଯୋଗ ହେଲା ଯେ ସେ ଓ ତାଙ୍କ ଦଳ ପକ୍ଷରୁ ଆଇନ୍ ସମ୍ମତ ସରକାରଙ୍କ ବିପକ୍ଷରେ ଲଢୁଛନ୍ତି ଏବଂ ରାଜ୍ୟରୁ ବହିଷ୍କୃତ କମ୍ୟୁନିଷ୍ଟ ପାର୍ଟିର ପ୍ରଭାବ ବିସ୍ତାର କରୁଛନ୍ତି । ଏହା ପରେ 'ଇଣ୍ଡୋନେସିଆ ଜାତୀୟ ସଂସଦ'କୁ ମଧ୍ୟ ଭାଙ୍ଗି ଦିଆଗଲା । ଏ ଘଟଣାର ଦୁଇବର୍ଷ ପରେ ସେଠା ସରକାରଙ୍କ ପକ୍ଷରୁ ଗଭର୍ଣ୍ଣରଜେନେରାଲ ଦୟାକରି ସୁକର୍ଣ୍ଣୋଙ୍କୁ ବନ୍ଦୀରୁ ମୁକ୍ତି ଦାନ କଲେ । କିନ୍ତୁ ମୁକ୍ତି ପାଇବା ସଙ୍ଗେ ସଙ୍ଗେ ସୁକର୍ଣ୍ଣୋ ଦ୍ୱିଗୁଣ ଉତ୍ସାହରେ ସ୍ୱାଧୀନତା ଆନ୍ଦୋଳନ ତେଜେଇବା ଦେଖି ୧୯୩୩ ମସିହାରେ ଦ୍ୱିତୀୟ ବାର ତାଙ୍କୁ ୯ ମାସ ପର୍ଯ୍ୟନ୍ତ ଗୃହରେ ଆବଦ୍ଧ କରିଦିଆ ଗଲା । ୯ ମାସ ପରେ ତାଙ୍କୁ ଓ ତାଙ୍କ ପରିବାରର ସମସ୍ତଙ୍କୁ ଅତି ଅସ୍ୱାସ୍ଥ୍ୟକର ମାଲେରିଆ ବହୁଳ ଫ୍ଲୋରେସ୍ ( Flores ) ଦ୍ୱୀପକୁ ନିର୍ବାସିତ କରାଗଲା ।

ଫ୍ଲୋରେସ୍‌ରେ ଅବସ୍ଥାନ କାଳରେ ସୁକର୍ଣ୍ଣୋ ପୃଥିବୀର ବିଭିନ୍ନ ଧର୍ମ ସଂକ୍ରାନ୍ତ ପୁସ୍ତକ ପଢି ସମୟର ସଦ୍‌ବ୍ୟବହାର କରୁଥିଲେ । ସେଥିରୁ ତାଙ୍କର ତୁଳନାତ୍ମକ ଧର୍ମ-ବିଗ୍ରହ-ଶକ୍ତି ଯଥେଷ୍ଟ ଉଦ୍ରେକ ହୋଇଥିଲା । ସେ ମଧ୍ୟ ସେଠାରେ ଦୀର୍ଘ ପ୍ରାୟ ୬ ବର୍ଷ ରହି ସାମାଜିକ ବ୍ୟାପାରରେ ନିଜକୁ ଜଡ଼ିତ କରିଥିଲେ ।

୧୯୩୮ ସାଲ ଏପ୍ରିଲ ମାସରେ ପୁଣି ତାଙ୍କୁ ଫ୍ଲୋରେସ୍ ଦ୍ୱୀପରୁ ନେଇ ସୁମାତ୍ରା ଦ୍ୱୀପର ବେଙ୍କୀଲନ୍ (Bengkeelan) ନାମକ ସ୍ଥାନରେ ସ୍ଥାୟୀଭାବେ ଆଜୀବନ ଦଣ୍ଡରୂପେ ନିର୍ବାସିତ କରାଗଲା । ସେଠାରେ ଦୀର୍ଘ ଛ ବର୍ଷ ପର୍ଯ୍ୟନ୍ତ ଅତି କଷ୍ଟଦାୟକ

ବନ୍ଦୀ ଗୃହରେ ତାଙ୍କୁ ଆବଦ୍ଧ କରାଗଲା । କିନ୍ତୁ, ୧୯୪୨ ମସିହାରେ ଦ୍ୱିତୀୟ ପୃଥିବୀ ଯୁଦ୍ଧ ବେଳେ ତାଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ ।

"ପେରଲ୍ ହାର୍ବରରେ ଯେଉଁ ବୋମାଟି ପଡ଼ିବ ସେଥିର ବିସ୍ଫୋରଣ ହେବ ଜାଭାରେ" । ଏ କଥା ରାଣୀ ଭିଲ୍ ହେଲ୍‌ମିନା ( Queen Wilhelmina ) କହିଥିଲେ । କାରଣ ସେତେବେଳେ ଇଣ୍ଡନର ଅବସ୍ଥା ଅତ୍ୟନ୍ତ ଉଦ୍‌ବେଗଜନକ ହୋଇଥିଲା । ଡଚ୍ କାମେଣ୍ଡର ମାର୍ଚ୍ଚ ମାସ ୧୯୪୨ ସାଲରେ ପରାଜିତ ହେବା ଫଳରେ ଜାପାନ ପକ୍ଷରୁ ଇଣ୍ଡୋନେସିଆ ଅଧିକୃତ ହେଲା । ଜାପାନୀମାନେ ସେଠାର ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ସୁକର୍ଣ୍ଣଙ୍କୁ ବେଙ୍କୋଲନ୍ ବନ୍ଦୀ ଗୃହରୁ ମୁକ୍ତ କରି ତାଙ୍କ ସଙ୍ଗେ ସହଯୋଗ ସ୍ଥାପନ କରିବାକୁ ପ୍ରବର୍ତ୍ତାଇଲେ, ଠିକ୍ ଯେପରି ଭାରତର ତତ୍‌କାଳୀନ ଆଜାଦ୍‌ହିନ୍ଦ୍ ଫୌଜର ଭାରତୀୟ ନେତା ସୁଭାଷ ବୋଷ ଭାରତର ସ୍ୱାଧୀନତା ପାଇଁ ଜାପାନ ପକ୍ଷରୁ ସୁବିଧା ପାଇଥିଲେ । ସୁକର୍ଣ୍ଣୋ ସ୍ପଷ୍ଟ ବୁଝିଥିଲେ ଯେ, କୌଣସି ବୈଦେଶିକ ଶକ୍ତି ଇଣ୍ଡୋନେସିଆର ମଙ୍ଗଳ ସାଧନ କରିବ ନାହିଁ । ତଥାପି ଏକ ସ୍ଥାନରେ ଆବଦ୍ଧ ହୋଇ ରହିବା ଅପେକ୍ଷା ବାହାରକୁ ଆସି ବୈଦେଶିକ ଜାପାନୀମାନଙ୍କ ନିର୍ଦ୍ଦେଶ ଗ୍ରହଣ କରିବା ମନ୍ଦ ନୁହେଁ । ସ୍ୱଦେଶାନୁକୂଳ କର୍ମରେ ବ୍ରତୀ ହେବା ସୁଯୋଗ ଗ୍ରହଣ କରିବା ଉଚିତ୍ । ଏ ଦୃଷ୍ଟିରୁ ଜାପାନୀଙ୍କ ସଙ୍ଗେ ସୁକର୍ଣ୍ଣୋଙ୍କ ସହଯୋଗ ଉଦ୍ଦେଶ୍ୟମୂଳକ ଥିଲା ବୋଲି କୁହାଯିବ । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା, ଯେ କୌଣସି ଉପାୟରେ ହେଉ ଇଣ୍ଡୋନେସିଆକୁ ସ୍ୱାଧୀନ କରିପାରିଲେ ତାଙ୍କ ଜୀବନର ଶ୍ରେଷ୍ଠ ଆକାଂକ୍ଷା ଚରିତାର୍ଥ ହେବ ।

ଡଚ୍ ସରକାରଙ୍କ ଦ୍ୱାରା ପ୍ରସ୍ତରରେ ଥିଲା ଯେ, ସୁକର୍ଣ୍ଣୋ ଜଣେ ଦେଶଦ୍ରୋହୀ, ଅବିଶ୍ୱାସୀ ରାଜନୈତିକ ଖେଳଓ୍ୱାଡ୍ ଓ ସୁବିଧାବାଦୀରୂପେ ବର୍ଣ୍ଣିତ ହୋଇଥିଲେ । କିନ୍ତୁ ୧୯୪୮ ସାଲ ଶେଷ ସୁଦ୍ଧା ତାଙ୍କ ବିରୁଦ୍ଧରେ ପ୍ରସ୍ତରିତ ସେ ସମସ୍ତ ଅଭିଯୋଗ ହଲେଣ୍ଡ ସରକାର ପ୍ରତ୍ୟାହାର କରିଛନ୍ତି ବୋଲି ଇଣ୍ଡୋନେସିଆ ତଥା ପୂର୍ବ ଏସିଆରେ ହଲେଣ୍ଡର ଭୂତପୂର୍ବ ଗଭର୍ଣ୍ଣର ଜେନେରାଲ, ଭାନ୍‌ମୁକ୍ (Van Mook) କହିଥିଲେ ଯେ "ପରବର୍ତ୍ତୀ ସମୟରେ ପ୍ରାପ୍ତ ଦଲିଲ ପତ୍ରରୁ ସ୍ପଷ୍ଟ ଜଣାଯାଉଛି, ସୁକର୍ଣ୍ଣୋଙ୍କର ମୁଖ୍ୟ ଅଭିଳାଷ ହେଉଛି ଇଣ୍ଡୋନେସିଆର ସଂପୂର୍ଣ୍ଣ ସ୍ୱାଧୀନତା " ।

ବନ୍ଦୀ ଜୀବନରୁ ମୁକ୍ତି ଲାଭକରି ସୁକର୍ଣ୍ଣୋ । ଜାଭାକୁ ଯାତ୍ରା କଲେ ଓ ସେଠାରେ ସେ ତାଙ୍କ ପୂର୍ବବନ୍ଧୁ ହଟ୍ଟା ( Hatta ) ଓ ଜାହାରିର ( Sjahrir )ଙ୍କ ସଙ୍ଗେ ମିଳିତ ହେଲେ । ସେମାନଙ୍କ ସଙ୍ଗେ ମନ୍ତ୍ରଣା ପରେ ସ୍ଥିର ହେଲା ଯେ, ସ୍ୱାଧୀନତା ପାଇଁ ଜାତୀୟ ଆନ୍ଦୋଳନ ଦୁଇଟି ସ୍ତରରେ ବିଭକ୍ତ ହେବ । ପ୍ରଥମଟି, ଆଇନ୍, ସମ୍ମତ ଆନ୍ଦୋଳନ ପ୍ରକାଶ୍ୟ କ୍ଷେତ୍ରରେ ଏବଂ ଦ୍ୱିତୀୟଟି ହେଉଛି ଅନ୍ତରାଳ-ଭୂଗର୍ଭରେ । ପ୍ରଥମ ଭାଗର ନେତୃତ୍ୱ ନେବେ ହଟ୍ଟା ଓ ଜାହାରିର । ଜାପାନୀମାନଙ୍କ ସଙ୍ଗେ ଯୋଗ ସୂତ୍ର ରଖିବେ ନିଜେ ସୁକର୍ଣ୍ଣୋ । ଦ୍ୱିତୀୟ ପର୍ଯ୍ୟାୟର ଭାର ବହନ କରି ଅନ୍ୟାଦଳସହ ଗୁପ୍ତ ଉପାୟରେ ଦଳକୁ ସୁରକ୍ଷିତ ଓ ସଙ୍ଗଠିତ କରିବା ହେବ ତାଙ୍କର ମୁଖ୍ୟ କାମ । ସେ ସମୟରେ ଜାପାନୀମାନଙ୍କ କଡ଼ାକଟକଣା ଓ ନୃଶଂସ ବ୍ୟବହାର ହେତୁ ଇଣ୍ଡୋନେସିଆର ଜନସାଧାରଣ ତାଙ୍କ ପ୍ରତି ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ । ତେଣୁ ସେମାନଙ୍କ ସେହି ବିରୋଧଭାବ ପ୍ରଶମିତ ନିମନ୍ତେ ଜାପାନ ପକ୍ଷରୁ ପ୍ରତିଶ୍ରୁତି ଦିଆଗଲା ଯେ, ଅବିଳମ୍ବେ ସେମାନଙ୍କୁ ଶାସନ କ୍ଷମତା ହସ୍ତାନ୍ତରିତ କରାଯିବ । ଆଉ ମଧ୍ୟ ସୁକର୍ଣ୍ଣୋ ଏବଂ ତାଙ୍କ ସହଯୋଗୀମାନଙ୍କୁ କେନ୍ଦ୍ର ମଧ୍ୟ ସାଧାରଣତାନ୍ତ୍ରିକ-ଦଳର ସଭ୍ୟ ତାଲିକାରେ ଅନ୍ତର୍ଭୁକ୍ତ କରାଯିବ । ଏହାଦ୍ୱାରା ଜାପାନ ସରକାର ଏବଂ ସ୍ୱାଧୀନ ଇଣ୍ଡୋନେସିଆ ଶାସନ-ତନ୍ତ୍ରର ଏକ ମଧ୍ୟକାଳୀନ ବ୍ୟବସ୍ଥା ସଂପାଦିତ ହୋଇପାରିବ । ଏହି ବ୍ୟବସ୍ଥାଟି ମଧ୍ୟ ପ୍ରଧାନମନ୍ତ୍ରୀ ଟୋଜୋ ( Tojo ) ଙ୍କ ସମର୍ଥନ ଲାଭକରି ୧୯୪୩ ମସିହା ଜୁନ୍ ମାସରେ ପ୍ରସ୍ତରିତ ହେଲା । ସେହି ନୂତନ ବ୍ୟବସ୍ଥା ଅନୁସାରେ ସୁକର୍ଣ୍ଣୋଙ୍କ ନେତୃତ୍ୱରେ ସ୍ତରିକଜଣଙ୍କୁ ନେଇ ଗୋଟିଏ ବୋର୍ଡ ଗଠିତ ହେଲା । ସେହି ବୋର୍ଡ ଉକ୍ତ ବ୍ୟବସ୍ଥାନୁସାରେ ଶାସନ ସଂକ୍ରାନ୍ତ କାର୍ଯ୍ୟରେ ସରକାରଙ୍କ ଉପଦେଷ୍ଟାରୂପେ କାର୍ଯ୍ୟ କରି ଇଣ୍ଡୋନେସିଆର ପ୍ରତିନିଧିତ୍ୱ କରିବା ଠିକ୍ ହେଲା । ସୁକର୍ଣ୍ଣୋଙ୍କ ସଭାପତିତ୍ୱରେ ଏକ ଅଧସ୍ତନ ପ୍ରଶାସନିକ-ସଂସଦ ମଧ୍ୟ ଗଠିତ ହେଲା ।

ସେହି ସୁଗଠିତ ଶାସନତାନ୍ତ୍ରିକ-ଦଳର ପ୍ରାଣକେନ୍ଦ୍ରରୂପେ ଏକ ସ୍ୱେଚ୍ଛାସେବୀ ସାମରିକ ସଂଘ ମଧ୍ୟ ଗଠିତ ହେଲା, ଯାହାକୁ ଇଣ୍ଡୋନେସଆରେ "ପେଟା" କୁହାଯାଏ । ସେହି ସ୍ୱେଚ୍ଛାକୃତ ସୈନ୍ୟମାନେ ଜାପାନୀଙ୍କ ଦ୍ୱାରା ସାମରିକ ଶିକ୍ଷାଲାଭ କଲେ । ଦଳର ପ୍ରଧାନ କାର୍ଯ୍ୟ ହେଲା, ଦେଶକୁ ଶତ୍ରୁ ଆକ୍ରମଣରୁ ନିରାପଦକରି ରଖିବା । ୧୯୪୫ ମସିହାରେ ସେହି ସ୍ୱଦେଶୀ ଦଳର ସଂଖ୍ୟା ଥିଲା ଏକଲକ୍ଷ କୋଡ଼ିଏ ହଜାର । ଏ ଦଳହିଁ ପ୍ରକୃତରେ ଡ: ସୁକର୍ଣ୍ଣୋ ଓ ପ୍ରଶାସନିକ ସଂସଦର ରକ୍ଷକ ବା ମେରୁଦଣ୍ଡ ରୂପେ କାର୍ଯ୍ୟ କରୁଥିଲା ।

୧୯୪୪ ମସିହା ବେଳକୁ ଉପରୋକ୍ତ ପ୍ରଶାସନିକ ସଂସଦ ବିଦେଶୀ ଡଚ୍ ଓ ଜାପାନୀଙ୍କୁ ଶତ୍ରୁଜ୍ଞାନ କରି ସେମାନଙ୍କ ବିରୋଧରେ କାର୍ଯ୍ୟ ଆରମ୍ଭ କରି ଦେଲା । ଜାପାନୀମାନେ ଆଗରୁ ଜାଣିପାରିଲେ ଯେ, ସେହି ସୁସଙ୍ଗଠିତ 'ପେଟା' ତାଙ୍କର ସମର-ସହାୟକ ନହୋଇ ଇଣ୍ଡୋନେସଆର ସ୍ୱାତନ୍ତ୍ର୍ୟ କାମନାରେ ଅଭିଳିପ୍ତ ହୋଇଅଛି । ତେଣୁ ୧୯୪୩ ମାର୍ଚ୍ଚ ପହିଲା ଦିନ ପ୍ରଶାସନିକ-ଦଳକୁ ଭାଙ୍ଗି ଦେଇ ସରକାରଙ୍କୁ ଅନୁସରଣ କରୁଥିବା (ରାଜଭକ୍ତ) 'ଜନତା-ସଂଘ' ଗଠନ କରାଗଲା । ଏଦଳକୁ ଜାପାନୀ ଭାଷାରେ ('ଜ୍ୱେଓ୍ୱା ହୋକୋକୈ' ( Djawa Hokokai ) ନାମରେ ଅଭିହିତ କରାଗଲା । ନାମକୁ ମାତ୍ର ସୁକର୍ଣ୍ଣୋ ସେଥିର ଅଧ୍ୟକ୍ଷ ହୋଇ ରହିଲେ । ସଂଘଟି ସର୍ବତୋଭାବେ ଜାପାନୀଙ୍କ ପ୍ରଧାନ ସେନାପତିଙ୍କ ଆଦେଶର ଅନୁଗାମୀ ହୋଇ ରହିଲେ । ଦ୍ୱିତୀୟ ମହାଯୁଦ୍ଧର ଶତ୍ରୁମାନେ ଇଣ୍ଡୋନେସିଆ ପ୍ରତି ଅଗ୍ରସର ହେଉଥିବା ଜାଣି ଜାପାନୀ ସାମରିକ ସେନାଧ୍ୟକ୍ଷ ଜାଭା ଏବଂ ଅନ୍ୟାନ୍ୟ ସ୍ଥାନରେ ସ୍ୱତନ୍ତ୍ର ଇଣ୍ଡୋନେସିଆ ସରକାର ସ୍ଥାପନ କରିବାକୁ ଉଦ୍ୟତ ହେଲେ । ଏଥିପାଇଁ ଗୋଟିଏ ଅନୁଧ୍ୟାନକାରୀ କମିଟି ୧୯୪୫ ମାର୍ଚ୍ଚ ପହିଲେ ସ୍ଥାପିତ ହେଲା । ସୁକର୍ଣ୍ଣୋ ଓ ତାଙ୍କ ବନ୍ଧୁ ହଟ୍ଟା ମଧ୍ୟ ସେଥି

୫୯ ସଦସ୍ୟ ବିଶିଷ୍ଟ କମିଟିରେ ନିଯୁକ୍ତ ହେଲେ । ସେହି କମିଟି ଇଣ୍ଡୋନେସିଆର ବିଭିନ୍ନ ମୁଖ୍ୟ ସଂପ୍ରଦାୟ ଓ ଜାତି-ଗୁଡ଼ିକର ପ୍ରତିନିଧିତ୍ୱ କରୁଥିଲେ ।

୧୯୪୫ ଅଗଷ୍ଟ ୭ ତାରିଖ ଦିନ ସାଇଗନ୍ (Saigon) ରେ ଜାପାନର ପ୍ରତିଷ୍ଠିତ ଦକ୍ଷିଣ-ପୂର୍ବ-ଏସିଆ-ସାମରିକ କେନ୍ଦ୍ର ପକ୍ଷରୁ ଘୋଷଣା କରାଗଲା ଯେ, ଇଣ୍ଡୋନେସିଆରେ ସ୍ୱତନ୍ତ୍ର-ସରକାର ଗଠନ ପାଇଁ ଏକ ପ୍ରସ୍ତୁତି କମିଟି ଗଠିତ ହୋଇ ସେଥିରେ ସୁକର୍ଣ୍ଣୋ ଅଧ୍ୟକ୍ଷତା କରିବେ । ତା'ପରଦିନ ଇଣ୍ଡୋ-ଚୀନର ଦାଲତ୍ ( Dalat ) ଠାରେ ଅବସ୍ଥିତ ଜାପାନର ଦକ୍ଷିଣ-ପୂର୍ବ-ଏସିଆ-ସାମରୀକ ଦଳର ପ୍ରଧାନ ଅଧ୍ୟକ୍ଷ ଜେନେରାଲ୍ ତେରାଉଚ ( General Terauchi ) ନିଜେ ସୁକର୍ଣ୍ଣୋ, ହତା ଓ ରାଡ଼ଜୁନାନ୍ ( Radjunan )ଙ୍କୁ ଡକାଇ ସେମାନଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ସେ ବର୍ଷ ଅଗଷ୍ଟ ୨୪ ତାରିଖରେ ଇଣ୍ଡୋନେସିଆକୁ ସ୍ୱାଧୀନତା ହସ୍ତାନ୍ତରିତ କରାଯିବ । ଉପରୋକ୍ତ ୩ ଜଣ ନେତା ୧୪ ତାରିଖରେ ଜାକର୍ତ୍ତା (Jakarta)କୁ ଫେରି ଆସି ସେଠାରେ ଥିବା ଗୁପ୍ତ ଉଗ୍ରପନ୍ଥୀ ଦଳକୁ ଏକଥା ଜଣାଇଲେ । କିନ୍ତୁ ଉଗ୍ରପନ୍ଥୀମାନେ ସେହି ସ୍ୱାତନ୍ତ୍ର୍ୟଦାନ ଗ୍ରହଣ କରିବାକୁ ଇଚ୍ଛୁକ ହେଲେ ନାହିଁ । କାରଣ ଇଣ୍ଡୋନେସଆରେ ଜାପାନୀଙ୍କ ସମାନ୍ତରାଳ ପ୍ରତି-ପକ୍ଷ ଦଳ ରୂପେ ରହି ସେମାନେ କାର୍ଯ୍ୟ କରୁଥିଲେ । ଏପରି ସମୟରେ ଜାପାନର ଶୋଚନୀୟ ପରାଜୟ ହୋଇ ଅବସ୍ଥା ବଦଳିଗଲା । ସେଥିସଙ୍ଗେ ସୁକର୍ଣ୍ଣୋଙ୍କ ରାଜନୈତିକ କାର୍ଯ୍ୟ କଳାପର ଦ୍ୱିତୀୟ ପର୍ଯ୍ୟାୟଟି ଶେଷ ହେଲା ।

ସୁକର୍ଣ୍ଣୋଙ୍କ ବନ୍ଧୁ ଜାହରିର ( Sjaharir ) ସେତେବେଳେ ଇନ୍ଦୋନେସିଆ ଗୁପ୍ତଦଳର ନେତୃତ୍ୱ ନେଇଥାନ୍ତି । ସୁକର୍ଣ୍ଣୋଙ୍କୁ ସେ ବାରମ୍ବାର ଅନୁରୋଧ କରି କହିଲେ ଏତେବେଳେ ଯଦି ଇଣ୍ଡୋନେସିଆର ସ୍ୱାଧୀନତା ଘୋଷଣା କରାଯାଏ, ତେବେ ତାଙ୍କ ସଙ୍ଗେ 'ପେତା' (ଶାସନ ତାନ୍ତ୍ରିକ ଦଳ) ତାଙ୍କୁ ପୂର୍ଣ୍ଣ ଭାବେ ସମର୍ଥନ କରିବ କିନ୍ତୁ ସୁକର୍ଣ୍ଣୋ ଓ ହତା ଦେଖିଲେ ଯେ, ସେପରି କଲେ ଦେଶରେ ନିରର୍ଥକ ରକ୍ତପାତ ହେବା ସମ୍ଭବ ଓ ସେମାନେ ସେଥିରେ ପରାଜିତ ହେବେ । ତଥାପି, ନିଜେ ସୁକର୍ଣ୍ଣୋଙ୍କ ଦ୍ୱାରା ସଙ୍ଗଠିତ ଗୁପ୍ତଦଳ ତଥା ଛାତ୍ରସଂଘ ଉତ୍ୟକ୍ତ ହୋଇ ଅଗଷ୍ଟ ୧୬ ତାରିଖ ପ୍ରଭାତରେ ଜୋର କରି ସୁକର୍ଣ୍ଣୋ ଓ ପେତାଙ୍କୁ ହରଣ କରି ପେତା ( Peta ) ବା ପ୍ରଶାସନିକ-ସଂଘର କେନ୍ଦ୍ର ପେଙ୍ଗାସ୍‌ଦେଙ୍କ୍ଲକ୍ ( Pengasadengklok ) ନାମକ ସ୍ଥାନକୁ ନେଇଗଲେ । ସେଠାରେ ସ୍ୱାଧୀନତା ଘୋଷଣା କରିବାକୁ ତାଙ୍କ ଉପରେ ଚାପ ଦିଆଗଲା । ଏ ପରିସ୍ଥିତିରେ ସେ ଉଭୟ ନେତାଙ୍କ ଅପହରଣ ସମ୍ବାଦ ଜାପାନୀଙ୍କୁ ଅଜ୍ଞାତ ରହିଲା ନାହିଁ । ସେଥିରୁ ସୁକର୍ଣ୍ଣୋ ସ୍ପଷ୍ଟ ଜାଣିପାରିଲେ ଯେ, ଗୁପ୍ତଦଳର ଯାବତୀୟ କାର୍ଯ୍ୟକଳାପ ଓ ମସୁଧା ଜାପାନୀଙ୍କ ପକ୍ଷରେ ଅଜ୍ଞାତ ହୋଇ ରହୁନାହିଁ । ତେଣୁ ସେଦିନ ସୁକର୍ଣ୍ଣୋ ଓ ହତା ରାତିରେ ଜାକର୍ତ୍ତାକୁ ଫେରିଆସିଲେ ।

ପରଦିନ ପ୍ରଭାତରେ ସୁକର୍ଣ୍ଣୋ ତାଙ୍କ ନିଜ ଗୃହ ନିକଟରେ ଦଳେ ଲୋକ ମୁଖରୁ ଗୁଜବ ଶୁଣିଲେ, ଇଣ୍ଡୋନେସିଆକୁ ଲୋକ-ତାନ୍ତ୍ରିକ ( Republic ) ରାଷ୍ଟ୍ରରୂପେ ସ୍ୱାଧୀନ କରି ଦିଆଯିବ । ବାସ୍ତବରେ ଏକଥା ସେଦିନ ଇଣ୍ଡୋନେସିଆ ରେଡ଼ିଓରେ ଆବଦ୍ଧ ଗୃହରୁ ଦେଶୀୟ କର୍ମଚାରୀଙ୍କ ମୁଖରେ ଉଦ୍‌ଘୋଷିତ ହେଲା ।

ଅଗଷ୍ଟ ୧୮ ତାରିଖରେ ଏକ ସ୍ୱାଧୀନ ସରକାର ପ୍ରସ୍ତୁତି କମିଟି ଗଠିତ ହେଲା । ସେଥିରେ ସୁକର୍ଣ୍ଣୋ ଓ ହତା ଯଥାକ୍ରମେ ଅଧ୍ୟକ୍ଷ ଏବଂ ଉପାଧ୍ୟକ୍ଷରୂପେ ନିଯୁକ୍ତ ହେଲେ । ୧୮ ତାରିଖରେ ସେ ବୃହତ୍ ଏକ ମୁକ୍ତ ସଭାରେ ଭାଷଣ ମାଧ୍ୟମରେ ଜାତୀୟ ସ୍ୱାତନ୍ତ୍ର୍ୟର ଦାବୀ ବିଷୟ ଲୋକଙ୍କୁ ଶୁଣାଇଲେ । ଜାପାନୀ ସୈନ୍ୟମାନଙ୍କ ଆପତ୍ତି ସତ୍ତ୍ୱେ ତାଙ୍କ ଭାଷଣ ବନ୍ଦ ହେଲନାହିଁ ।

ଏ ଘଟଣା ପରେ ଜାପାନର ଶତ୍ରୁପକ୍ଷୀୟ ବ୍ରିଟିଶ୍ ସୈନ୍ୟ ସେପ୍‌ଟେମ୍ବର ୨୯ ତାରିଖରେ ଜାକର୍ତ୍ତାରେ ପ୍ରବିଷ୍ଟ ହେଲେ । ତାଙ୍କ ଜାହାଜରେ ଛଦ୍ମବେଶରେ ଡ଼ଚ୍‌ସୈନ୍ୟ ବାହିନୀ ମଧ୍ୟ ସେଠାରେ ପହଞ୍ଚିଗଲେ । ଏଥିରେ ଇଣ୍ଡୋନେସିଆ ଲୋକଙ୍କ ମନରେ ଦୃଢ଼ ଧାରଣା ହେଲା ଯେ, ସେମାନଙ୍କ ମାତୃଭୂମି ପୁଣି ବୈଦେଶିକ ବନ୍ଧନରେ ଆବଦ୍ଧ ହେବାକୁ ଯାଉଛି । ତେଣୁ ଜାଭା, ସୁମାତ୍ରା ଓ ବାଲି ଦ୍ୱୀପରେ ୧୯୪୫ ସାଲର ଶେଷ ଦୁଇମାସରେ ସର୍ବତ୍ର ପ୍ରାଣମୂର୍ଚ୍ଛା ଯୁଦ୍ଧ ଲାଗିଗଲା । ସ୍ୱାଧୀନତା ଯୁଦ୍ଧର ତୀବ୍ରତା ସୁରବାୟା (Surabayaରେ) ସଂଘଟିତ ହେଲା । ଏହି ଯୁଦ୍ଧହିଁ ଇଣ୍ଡୋନେସିଆରେ ରାଜନୈତିକ ଭାଗ୍ୟ ପରିବର୍ତ୍ତନର ପ୍ରଧାନ କ୍ଷେତ୍ର ସୃଷ୍ଟିକଲା । ଏକ ପକ୍ଷରେ ବଳିଷ୍ଠ ବ୍ରିଟିଶ୍ ଓ ଡ଼ଚ୍ ସେନାବାହିନୀ ଅନ୍ୟ ପକ୍ଷରେ ଦୁର୍ବଳ ଲୋକତନ୍ତ୍ରବାଦୀ ଇଣ୍ଡୋନେସିଆର ହଜାର ହଜାର ସ୍ୱାଧୀନତାକାମୀ ଯବାନ । ଏ ଦୁଇ ପକ୍ଷର ସଂଘର୍ଷ ବାସ୍ତବରେ ତତ୍‌କାଳୀନ ଭାରତରେ ମହାତ୍ମାଗାନ୍ଧୀଙ୍କ ଅହିଂସା-ଅସହଯୋଗ-ସଂଗ୍ରାମକୁ ସ୍ମରଣ କରାଇଦିଏ ।

୧୯୪୬ ନଭେମ୍ବର ମାସରେ ବ୍ରିଟିଶ୍ ସୈନ୍ୟବାହିନୀ ଇଣ୍ଡୋନେସିଆରୁ ହଟିଆସିଲେ । ତଥାପି ଡ଼ଚ୍‌ମାନଙ୍କ ସାମ୍ରାଜ୍ୟ-ଲୋଭ ଇଣ୍ଡୋନେସିଆରୁ ଗଲାନାହିଁ । ବ୍ରିଟିଶ୍ ଫେରିଗଲା ପରେ ମଧ୍ୟ ସେମାନେ ତାଙ୍କଠାରୁ ଶାସନ ସମେତ ସାମରିକ କ୍ଷମତା ଗ୍ରହଣ କରି ସ୍ଥାନୀୟ ସ୍ୱାଧୀନତାପ୍ରେମୀଙ୍କ ବହୁ ସଂଖ୍ୟକ ଦେଶୀ ସୈନ୍ୟଙ୍କସଙ୍ଗେ ଲଢ଼ିବାକୁ ଲାଗିଲେ । ସାମ୍ରାଜ୍ୟ-ବାଦୀ ଡ଼ଚ୍‌ମାନଙ୍କର ସେହି ଅନ୍ୟାୟ ଆକ୍ରମଣ ପ୍ରତିରୋଧ କରିବାକୁ ବ୍ରିଟିଶ୍ କିମ୍ବା ଆମେରିକା ଆଦୌ ଉତ୍ସାହିତ ହେଲେନାହିଁ । ୧୯୪୭ ସାଲ ଜୁଲାଇ ୧୦ ତାରିଖ ଦିନ ହଲେଣ୍ଡର ପ୍ରଧାନମନ୍ତ୍ରୀ ବୀଲ୍ (Beel)ଙ୍କଠାରୁ ଆଦେଶ ପାଇ ଡ଼ଚ୍ ସୈନ୍ୟମାନେ ଇଣ୍ଡୋନେସିଆରେ ପୂର୍ବରୁ ପ୍ରତିଷ୍ଠିତ ପ୍ରଶାସନିକ ସଂସ୍ଥାଟି ଛିନ୍ନ କରିଦେଲେ । ଏପରି ଏକ ଅନ୍ୟାୟ ଅତ୍ୟାଚାରରେ ଭାରତ ଏବଂ ଅଷ୍ଟ୍ରେଲିଆ ନୀରବ ଦର୍ଶକ ହୋଇ ରହିପାରିଲେ ନାହିଁ । ତାଙ୍କର ତୀବ୍ର ପ୍ରତିକ୍ରିୟାଜାତିସଂଘରେ ଉପସ୍ଥାପିତ କରାଗଲା ।

୧୯୪୭ ଅଗଷ୍ଟ ୪ ତାରିଖ ଦିନ ନିରାପତ୍ତା କାଉନ୍‌ସିଲ୍‌ରେ ଏ ସମସ୍ୟା ବିଚାର ହେଲା ସତ, କିନ୍ତୁ ସେଥିରେ କେବଳ ପ୍ରସ୍ତାବ କରାଗଲା ଯେ, ଇଣ୍ଡୋନେସିଆରେ ଉଭୟ ପକ୍ଷ ପରସ୍ପର

ଯୁଦ୍ଧ ଓ ରକ୍ତପାତ ନ କରି ସେମାନଙ୍କ ଦାବୀ ଓ ସମସ୍ୟାଗୁଡ଼ିକ ପରସ୍ପର ଆଲୋଚନା ସୂତ୍ରରେ ସମାଧାନ କରିନେବା ଉଚିତ୍ । ଏହା ଫଳରେ ଜାତିସଂଘର ଶାନ୍ତିପ୍ରସ୍ତାବ ଅନୁସାରେ ରେନ୍‌ଭିଲ୍ଲେ (Renville)ଠାରେ ଉଭୟ ପକ୍ଷ ଏକ ଅସ୍ଥାୟୀ ଚୁକ୍ତିରେ ୧୯୪୮ ମସିହା ଜାନୁଆରୀ ୧୭ ତାରିଖରେ ଆବଦ୍ଧ ହେଲେ । କିନ୍ତୁ ବର୍ଷ ନ ପୂରୁଣୁ ଏ ଚୁକ୍ତିଟି ଭଙ୍ଗ ହେଲା । ସେବର୍ଷ ଡ଼ିସେମ୍ବର ମାସ ୧୮ ତାରିଖରେ ରେନ୍‌ଭିଲ୍ଲେ-ଚୁକ୍ତି ଲଂଘନ କରି ଇଣ୍ଡୋନେସିଆ ପ୍ରଶାସନିକ ଦଳର ବିଶ୍ବାସଘାତକ କରି ଡ଼ଚ୍ ସୈନ୍ୟ ଅତର୍କିତଭାବେ ଜାକର୍ତ୍ତା ଅଧିକାର କଲେ । ସେଠାରେ ସୁକର୍ଣ୍ଣୋ ଓ ହତ୍ତା ସମେତ ୬ଜଣ ମନ୍ତ୍ରୀଙ୍କୁ ବନ୍ଦୀକରି ହଲେଣ୍ଡ ସୈନ୍ୟମାନେ ତାଙ୍କୁ ସୁମାତ୍ରା ଦ୍ୱୀପରେ ଆବଦ୍ଧ କରିରଖିଲେ । ଜାତିସଂଘ ପକ୍ଷରୁ ନିରାପତ୍ତା କାଉନ୍‌ସିଲ୍‌ର ନିର୍ଦ୍ଦେଶକୁ ଭ୍ରୂକ୍ଷେପ ନ କରି ଡ଼ଚ୍ ସରକାର ଡ଼ିସେମ୍ବର ୨୪ ତାରିଖରେ ଯୁଦ୍ଧ ସଂଘର୍ଷ ଡ଼ିସେମ୍ବର ଶେଷ ପର୍ଯ୍ୟନ୍ତ ଚାଲୁ ରଖିଥିଲେ ।

ଏସିଆ ମହାଦେଶର ଏକତା ଓ ସଂହତି ନଷ୍ଟ ହେବା ସଂପର୍କରେ ହଲେଣ୍ଡର ସେହି ଦେଖାଚିହ୍ନିଭାବ ଯେ ଅତ୍ୟନ୍ତ ଗର୍ହିତ ତାହା ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ ମର୍ମେ ମର୍ମେ ଅନୁଭବ କଲେ । ତେଣୁ ସେ ବିଳମ୍ବ ନ କରି ଦିଲ୍ଲୀରେ ପ୍ରଥମ 'ଏସିଆ ସମ୍ମିଳନୀ' (Asian Conference) ଆହ୍ୱାନ କଲେ । ୧୯୪୯, ଜାନୁଆରୀ ୨୩ ତାରିଖରେ ସେହି ସମ୍ମିଳନୀରେ ସର୍ବସମ୍ମତିକ୍ରମେ ନିମ୍ନୋକ୍ତ ପ୍ରକାରେ ଦାବୀ କରାଗଲା ।

(୧) ଇଣ୍ଡୋନେସିଆର ସବୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ବନ୍ଦୀରୁ ମୁକ୍ତ କରାଯାଉ; (୨) ୧୯୪୯ ସାଲ, ମାର୍ଚ୍ଚ ୧୫ ତାରିଖ ମଧ୍ୟରେ ସମସ୍ତ ରାଜନୈତିକ ଦଳ ପକ୍ଷରୁ ଏକ ଅନ୍ତର୍ବର୍ତ୍ତୀ ସରକାର ଗଠନ ହେଉ, ଯେ କି ସ୍ୱାଧୀନଭାବେ ଇଣ୍ଡୋନେସଆରେ ଶାସନ ପରିଚାଳନା କରି ପାରିବେ;(୩) ୧୯୪୯ ମସିହା ଅକ୍‌ଟୋବର ପହିଲୁ ପୂର୍ବରୁ ରାଜ୍ୟରେ ବିଧାନ ସଭା ପାଇଁ ସଦସ୍ୟମାନେ ନିର୍ବାଚିତ ହୁଅନ୍ତୁ । (୪) ୧୯୫୦ ଆରମ୍ଭରୁ ସମଗ୍ର ଇଣ୍ଡୋନେସଆରେସ୍ୱାଧୀନ ଭାବେ ମିଳିତ ସରକାରକାର୍ଯ୍ୟକାରୀ ହେଉ; (୫) ଶାନ୍ତିପୂର୍ଣ୍ଣ ଉପାୟରେ ଡ଼ଚ୍ ଏବଂ ଇଣ୍ଡୋନେସିଆ ମଧ୍ୟରେ ସମାଧାନ ହେଉ ଏବଂ (୬) ଯଦି କେଉଁ ପକ୍ଷ ଏ ପ୍ରକାର ଚୁକ୍ତି ଭଙ୍ଗ କରନ୍ତି ତେବେ ତାଙ୍କ ବିପକ୍ଷରେ ଜାତିସଂଘ କଠୋର ଚାପ ପ୍ରୟୋଗ କରନ୍ତୁ ।

ଉପରୋକ୍ତ ପ୍ରସ୍ତାବଗୁଡ଼ିକ ନିରାପତ୍ତା କାଉନ୍‌ସିଲକୁ ପ୍ରଭାବିତ କଲା । କାରଣ, ଏହା ନିତାନ୍ତ ନିରପେକ୍ଷ, ଯୁକ୍ତି ଯୁକ୍ତ ଓ ବଳିଷ୍ଠ ଦାବୀ ବୋଲି ସେ ସମୟର ପ୍ରସିଦ୍ଧ ନେତାମାନେ ଅନୁଭବ କଲେ । ତେଣୁ ୧୯୪୯ ଜାନୁଆରୀ ୨୮ ତାରିଖରେ ନିରାପତ୍ତା କାଉନ୍‌ସିଲ୍ ଏଥିର ଅନୁରୂପ ପ୍ରସ୍ତାବ ଗୃହୀତ ହେଲା ।

ଡ଼ା. ସୁକର୍ଣ୍ଣୋ ତାଙ୍କର ସହକର୍ମୀମାନଙ୍କ ସହ ସୁମାତ୍ରାର ଏକ ପାର୍ବତୀୟ ସ୍ଥାନରେ ପ୍ରଥମେ ଆବଦ୍ଧ ହୋଇଥିଲେ । ପରେ ସେମାନଙ୍କୁ ବାଙ୍କା (Bangka) ନାମକ ଦ୍ୱୀପରେ ରଖା ଯାଇଥିଲା । ସେମାନଙ୍କୁ କୁହାଗଲା ଯେ, ରାଜନୈତିକ ବ୍ୟାପାରରୁ ନିବୃତ୍ତ ରହିବେ ବୋଲି ସେମାନେ ଯଦି ଲେଖି ଦିଅନ୍ତି, ତା ହେଲେ ତାଙ୍କୁ ମୁକ୍ତି ମିଳିବ । ସେମାନେ ଯେଉଁ ଗୃହଟିରେ ଆବଦ୍ଧ ହୋଇ ଥିଲେ ସେଥିର ପରିସର ମାତ୍ର ୨୦ ଫୁଟ । ପୁଣି ଦଉଡ଼ିଆ ଖଟିଆରେ ସେମାନଙ୍କୁ ଶୋଇବାକୁ ପଡୁଥିଲା । ଦୀର୍ଘ ସାତ ମାସର ସେହି ନିର୍ଯ୍ୟାତନା ଓ ଦାରୁଣ କଷ୍ଟରୁ ସେମାନେ ୧୯୪୯, ଜୁଲାଇ ୬ ତାରିଖରେ ମୁକ୍ତିଲାଭ କରି ଜାକର୍ତ୍ତାକୁ ଫେରି ଆସିଲେ । ସେ ବର୍ଷ ଅଗଷ୍ଟ ୧୪ରେ ଯୁଦ୍ଧ ବନ୍ଦ ଘୋଷଣା କରାଗଲା ; ଏବଂ ଡ଼ିସେମ୍ବର ୨୭ ତାରିଖ ଦିନ ଇଣ୍ଡୋନେସିଆ ଡ଼ଚ୍ କବଳରୁ ମୁକ୍ତ ହୋଇ ପୃଥିବୀରେ ଏକ ସ୍ୱାଧୀନ ରାଜ୍ୟରେ ପରିଣତ ହେଲା । ୧୯୫୦ ଅଗଷ୍ଟ ୧୭ ତାରିଖରେ ସେହି ସ୍ୱାଧୀନ ରାଷ୍ଟ୍ର ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ ଡ଼ା. ସୁକର୍ଣ୍ଣୋ ତାଙ୍କ ମହାନ୍ ଅବଦାନ ଇଣ୍ଡୋନେସିଆ ଇତିହାସରେ ଚିରସ୍ମରଣୀୟ ହେବ ।

---

ଚିତ୍ରକାର ଲେନ୍
ପାରଳାଖେମୁଣ୍ଡି, ଗଞ୍ଜାମ ।



ପ୍ରଧାନମନ୍ତ୍ରୀ
ଯୋଜନା କମିଶନ ବୈଠକରେ

# କମ୍ବନ ରାମାୟଣ

ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର

ନୃତ୍ୟରତ ଥିବାବେଳେ ଖସି ଯାଉଥିବା ସୁବର୍ଣ୍ଣ ଅଳଙ୍କାର, ଆଲିଙ୍ଗନରତ ପ୍ରେମିକପ୍ରେମିକାଙ୍କୁ ଅସୁବିଧା ଲାଗୁଥିବା ହେତୁ ଫୋପଡ଼ା ଯାଇଥିବା ରତ୍ନାଭୂଷଣ, ମିଥିଳା ଦାଣ୍ଡରେ ପଡ଼ିଥିବା ରାମ, ଲକ୍ଷ୍ମଣ ଓ ବିଶ୍ୱାମିତ୍ର ଦେଖିଲେ । ମିଥିଳା ନାଗରିକମାନଙ୍କର ଐଶ୍ୱର୍ଯ୍ୟ କଥା ଭାବୁଭାବୁ ଭ୍ରାତୃଦ୍ୱୟ ଓ ମହର୍ଷି ଦୁର୍ଗ ପାଚେରୀ ଅତିକ୍ରମ କରି ଜନକଙ୍କ ପ୍ରାସାଦ ନିକଟବର୍ତ୍ତୀ ହୋଇ ଯାଇଥିଲେ । ସେହି ସମୟରେ ପ୍ରାସାଦ ଉପରେ ସହଚରୀମାନଙ୍କସହ ସୀତା ଖେଳୁଥିଲେ । ହଠାତ୍ ରାମଙ୍କ ଆଖି କ୍ରୀଡ଼ାରତ ସୀତାଙ୍କ ଉପରେ ପଡ଼ିଗଲା । ସୀତା ମଧ୍ୟ ଆକସ୍ମିକଭାବେ ରାଜପଥରେ ଚାଲି ଯାଉଥିବା ଅପରିଚିତ ତିନିଜଣଙ୍କୁ ଚାହିଁଦେଲେ । ରାମଙ୍କ ଗତି ମୁହୂର୍ତ୍ତକ ପାଇଁ ଯେପରି ସ୍ଥିର ହୋଇଗଲା–କିଛି ଦିନ ତଳେତ ସେମାନେ ଲକ୍ଷ୍ମୀ ନାରାୟଣ ହୋଇ ବୈକୁଣ୍ଠରେ ଥିଲେ, ବର୍ତ୍ତମାନସିନା ମଣିଷ ଜନ୍ମ ଯୋଗୁଁ ବିରହ, ବିସ୍ମୃତ–ସେହି ଅବଚେତନର ସଂସାର ରାମଙ୍କୁ ଯେପରି ଅନ୍ୟମନସ୍କ କରିଦେଲା । ଅଟ୍ଟାଳିକା ଉପରେ ସୀତାଙ୍କର ମଧ୍ୟ ସେହି ଅବସ୍ଥା । ସେ ଖେଳ ବନ୍ଦ କରି ଚାହିଁ ରହିଥିବା ବେଳେ ବିଦେଶୀ ତିନିଜଣ ଚାଲିଗଲେ । ମିଥିଳା ରାଜଦାଣ୍ଡରେ କିଏ ସେହି ଓଜସ୍ୱୀ ପୁରୁଷ ତିନି ଜଣ । ସୀତା ହଠାତ୍ ଅସୁସ୍ଥ ଅନୁଭବ କଲେ । ରାମଙ୍କ ବିରହରେ ତାଙ୍କ ହାତର ସୁବର୍ଣ୍ଣ କଙ୍କଣ ଢ଼ୁଗୁଲାହୋଇ ଯାଇ ତଳେ ପଡ଼ିଗଲା । ସହଚରୀମାନେ ସୀତାଙ୍କ ଅସୁସ୍ଥତାର କାରଣ ବୁଝି ନ ପାରି ତାଙ୍କୁ ଶୟନାଗାରକୁ ନେଇ କୋମଳ ଶଯ୍ୟାରେ ଶୁଆଇ ଦେଇ ତାଙ୍କର ସେବା କରିବାକୁ ଲାଗିଲେ । କିନ୍ତୁ ସୀତାଙ୍କୁ ସେହି ତୂଳୀତଳ୍ପ ଶେଯ ପଥର ପରି କଠିନ ବୋଧ ହେଲା । ସେ ଚିତ୍କାର କରି ସଖୀମାନଙ୍କୁ ଭର୍ତ୍ସନାକଲେ । ଘୃତଦୀପର କୋମଳ ଆଲୋକ ତାଙ୍କୁ ତୀବ୍ର ଓ ପ୍ରଖର ବୋଧହେବାରୁ ସେ ତାକୁ ଲିଭାଇ ଦବାକୁ ପରିଚାରିକାମାନଙ୍କୁ ଆଦେଶ ଦେଲେ । ଘୃତଦୀପ ଲିଭାଇଦେଇ ଫୁଲରପାଖୁଡ଼ା ଉପରେ ସୀତାଙ୍କୁ ଶୁଆଇ ସଖୀମାନେ ନାନାପ୍ରକାର ମଣିମୁକ୍ତାରନ୍ ଆଣି ଶୟନାଗାରକୁ ଆଲୋକିତ କରିବାକୁ ଚେଷ୍ଟାକଲେ । ଫୁଲପାଖୁଡ଼ା ଉପରେ ଶୋଇ ସୀତା ଭାବି ଚାଲିଥାନ୍ତି : କିଏ ସେ ତରୁଣ ? ପ୍ରସନ୍ନ ବକ୍ଷ ଆଜାନୁଲମ୍ବିତ ବାହୁ, ନବଦୁର୍ବାଦଳ ଶ୍ୟାମ ପୁରୁଷ ? କିଏ ସେ ଆସିଲେ, ଚାହିଁଦେଇ ଚାଲିଗଲେ, ଉଭାନ୍ ହୋଇଗଲେ, ସତରେ ସେପରି କେହିଜଣେ ଆସିଥିଲେ ନାଁ ତାହା ତାଙ୍କ ମନର ଭ୍ରାନ୍ତି ମାତ୍ର ଥିଲା ।

ସୀତାଙ୍କୁ ବ୍ୟଥିତ କରିବା ପରି ଆଉଜଣେ ଯୁବତୀଙ୍କୁ ରାମଙ୍କ ରୂପ ଆଲୋଡ଼ିତ କରିବ, କିନ୍ତୁ ତାହା ଘଟିବ ବହୁ ବର୍ଷ-ପରେ ଅଯୋଧ୍ୟା ଓ ମିଥିଳାଠୁ ବହୁ ଦୂରରେ, ପଞ୍ଚବଟୀର ଗଭୀର ଅରଣ୍ୟରେ !

ଏଣେ ଜନକଙ୍କ ଅତିଥି ଭବନରେ ମହର୍ଷି ବିଶ୍ୱାମିତ୍ର ଓ ଭାଇ ଲକ୍ଷ୍ମଣ ଗାଢ଼ ନିଦରେ ଶୋଇଥିବାବେଳେ ରାମ କିନ୍ତୁ ଅଶାନ୍ତ, ଅନିଦ୍ରା, ବ୍ୟାକୁଳ । ନୀତି ନୀୟମ, ମର୍ଯ୍ୟାଦାଜ୍ଞାନ, କେହି ତାଙ୍କୁ ଶାନ୍ତି ଦେଇ ପାରୁ ନାହାନ୍ତି, ସଂଯତ କରି ପାରୁ-ନାହାନ୍ତି–କିଏ ସେହି ଅପରୂପା ସୁନ୍ଦରୀ, ଯାହାଙ୍କୁ ବାରମ୍ବାର ଆଲିଙ୍ଗନ କରିବାକୁ ଇଚ୍ଛା ହେଉଛି, ଜନକଙ୍କ ପ୍ରାସାଦ ଉପରେ କିଏ ସେହି ତରୁଣୀ ଯାହାଙ୍କୁ କୋଳଭିତରକୁ ନେଇ ଯିବାକୁ ସମସ୍ତ ଅଙ୍ଗପ୍ରତ୍ୟେଙ୍ଗ ବ୍ୟାକୁଳ ହୋଇ ଉଠୁଛନ୍ତି । ରାମ ନିଜ ଅବସ୍ଥା ଦେଖି ହସି ପକାଇଲେ । ରାକ୍ଷସମାନଙ୍କୁ ମାରି ଋଷିମାନଙ୍କ ଯଜ୍ଞସ୍ଥାନକୁ ନିରାପଦ କରିବାପାଇଁ ଧନୁଷ୍ପାଣିହୋଇ ସେ ଅଯୋଧ୍ୟାରୁ ବାହାରିଥିଲେ, ଅଥଚ ସାଧାରଣ ଇକ୍ଷୁଦଣ୍ଡର ଧନୁ ଓ ପୁଷ୍ପବାଣରେ ସେ ଆହତ, ଜର୍ଜରିତ ଓ ହିତାହିତ ଜ୍ଞାନଶୂନ୍ୟ !

ମହାକବି କମ୍ବନ ରାମ ଓ ସୀତାଙ୍କ ରୂପ ବର୍ଣ୍ଣନାରେ ସରସ୍ୱତୀଙ୍କୁ ଯେପରି ଶତଚ୍ଛିନ୍ନକରି ପକାଇଛନ୍ତି ତାହା ପାଠକ-ମାନଙ୍କୁ ମୁଗ୍ଧ କରି ପକାଇବ !

ଶ୍ରୀରାମଙ୍କ ରୂପରେ କେବଳ ସୀତା ମୋହିତ ହୋଇ ନ ଥିଲେ । ସେହି ଅଭିରାମ ରାମଙ୍କ ରୂପ ଲାବଣ୍ୟ, ଭଦ୍ରମଣୀଷ, ନମ୍ର ବ୍ୟବହାର, ତାଙ୍କୁ ସମସ୍ତ ଅଯୋଧ୍ୟା ବାସୀଙ୍କର ପ୍ରିୟ କରି ପକାଇଥିଲା । ଜନକ ରାଜାଙ୍କ କନ୍ୟାସହ ତାଙ୍କର ଶୁଭପରିଣୟ ଅନୁଷ୍ଠିତ ହେବାକୁ ଯାଉଛି ଜାଣି ରାଜାଜ୍ଞା ପାଇ ସେମାନେ ବିବାହ ଉତ୍ସବରେ ଯୋଗଦେବା ପାଇଁ ମିଥିଳା ଯାଉଥିଲେ । କମ୍ବନ ବର୍ଣ୍ଣନା କରିଛନ୍ତି : ଅଯୋଧ୍ୟାରୁ ମିଥିଳାକୁ ଯାଉଥିବା ରାସ୍ତାରେ ଲୋକଙ୍କ ଥାଟପଟାଳି । ହସ୍ତୀ, ଅଶ୍ୱ, ଓଟ, ବଳଦ

ଯୋଚତ ଶକଟର ଶୋଭାଯାତ୍ରା ପଛରେ ଅସଂଖ୍ୟ ଲୋକ ନାଚି ଗୀତଗାଇ ଯାଉଥିଲେ । ହାତୀ ଉପରେ ଆରୋହଣକରି ଯାଉଥିବା ଧନାଢ୍ୟ ମହିଳାମାନଙ୍କ ଅଳଙ୍କାରରେ ସୂର୍ଯ୍ୟ କିରଣ ପଡ଼ି ପଥଚାରୀମାନଙ୍କ ଆଖି ଝଲସାଇ ଦେଉଥିଲା । ଶଗଡ଼ଟିଏ ପଛରେ ଦୌଡୁଥିବା ଯୁବକଟିର ଆଖି ପଥପାର୍ଶ୍ୱରେ ଗବାକ୍ଷ ଉପରେ ପଡ଼ିଗଲା । ରାମଙ୍କ ବିବାହ ଶୋଭାଯାତ୍ରା ଦେଖିବାକୁ ଠିଆହୋଇଥିବା ତରୁଣୀଟିଏର ମୁହଁକୁ ଚାହିଁ ଚାହିଁ ଶଗଡ଼ପଛରେ ସେ ଦୌଡୁଥାଏ । ଆଉ କେହି ଯୁବକର ଆଖି ପଛ ରଥରେ ବସିଥିବା ଯୁବତୀଟିଏର ସ୍ତନାଭରଣ ଖସି ଯାଉଥିବାରୁ ତାଙ୍କୁ ଚାହିଁ ଚାହିଁ ଯାଉଥିବାବେଳେ ଆଗରେ ଯାଉଥିବା ହସ୍ତୀସହ ଧକ୍କା ଖାଇଲା । ଅଶ୍ୱଟିଏ ଉପରୁ ଖସି ପଡ଼ିବାବେଳେ ସୁନ୍ଦରୀ ତରୁଣୀଟିକୁ ସାହାଯ୍ୟ କରିବାପାଇଁ ଯୁବକଟିଏ ତାକୁ ଟେକି ଧରିଲା ଓ ଅଶ୍ୱ ଉପରେ ତାକୁ ଆଉ ନ ବସାଇ ସେହିପରି ଟେକିଧରି ସେ ଚାଲିବାକୁ ଲାଗିଲା । କୌଣସି ନବଦଂପତି ମିଥିଳା ଯିବା ନେଇ ପୂର୍ବରାତ୍ରୀର କଳହପାଇଁ ପରସ୍ପର କଥା ହେଉ ନ ଥିଲେ ମଧ୍ୟ ପରସ୍ପରର ପାଖାପାଖି ହୋଇ ଚାଲୁଥାନ୍ତି ।

ସମସ୍ତଙ୍କ ପଛରେ ରାଜା ଦଶରଥଙ୍କ ପରିବାର ଓ ନିଜେ ରାଜା ଦଶରଥ ଯାତ୍ରା କରୁଥାଆନ୍ତି । ଦୁଇ ସହସ୍ର ଦେହରକ୍ଷୀଙ୍କ ଗହଣରେ ପାଲିଙ୍କିରେ ବସି ସୁମିତ୍ରା, ଶାଠିଏ ହଜାର ସୁନ୍ଦରୀ ସ୍ତ୍ରୀ ପରିବୃତ୍ତ ହୋଇ ରାମ ଜନନୀ କୌଶଲ୍ୟା ଓ ତାଙ୍କ ପଛରେ ଅନ୍ୟାନ୍ୟମାନେ । କୂଳଗୁରୁ ବଶିଷ୍ଠ ଦୁଇହଜାର ଶ୍ରୋତ୍ରୀୟ ବ୍ରାହ୍ମଣଙ୍କ ଗହଣରେ ବେଦଧ୍ୱନୀ କରି ମିଥିଳା ଚାଲିଥାନ୍ତି ।

× × × ×

ରାମଙ୍କର ଏତେ ଭାଗ୍ୟକୁ ଏତେ ସୁଖ, ଏତେ ଲୋକାଦରକୁ ଦୈବ ସହିପାରିଲାନି । ସିଇଦିନେ ଥରେ ପ୍ରାସାଦର ଦାସୀଟିକୁ ତାହାର କୁବ୍‌ଜ ପାଇଁ ରାମ ଥଟ୍ଟାକରି ଦେଇଥିଲେ ।

> "କ୍ରୀଡ଼ାରତ ରାମ କେଉଁକାଳେ କୌତୁକରେ
> ବାଟୁଳିଟିଏ ଲକ୍ଷିଥିଲେ ତାର କୁବ୍‌ଜପରେ ।
> ସେହିଦିନୁଥିଲା ତପୋକ୍ଷିମନେ ଚିତ୍ତ ଭାବ
> ଧରିଲା ସେ କୁପ, ଘୃଣା ଅସୂୟା ସ୍ୱଭାବ ।"

କମ୍ବନ ସେହି ଦାସୀକୁ 'କୁନି' ବୋଲି ନାମ ଦେଇଛନ୍ତି । ସେହି ମନ୍ଥରା ରାଣୀ ମଝଡ଼ା କୈକେୟୀଙ୍କୁ ପରାମର୍ଶଦେଇ ଶ୍ରୀରାମଙ୍କୁ ଚଉଦ ବର୍ଷ ବନବାସ ପାଇଁ ପଠାଇ ଦେଲା । ଅନ୍ୟ ରାମାୟଣରେ ମନ୍ଥରାର ରାମ ବିଦ୍ୱେଷ ମନୋଭାବପାଇଁ କୌଣସି କାରଣ ଦର୍ଶା ଯାଇନାହିଁ । କିନ୍ତୁ କମ୍ବନ ରାମଙ୍କ ବାଲ୍ୟ ଚପଳତାକୁ ମନ୍ଥରାର ପରବର୍ତ୍ତୀ ଅସନ୍ତୋଷର କାରଣରୂପେ ଚିତ୍ରଣ କରିଛନ୍ତି ।

ବାଲ୍ମୀକି ରାମାୟଣରେ ସୀତାଙ୍କ ରୂପରେ ପ୍ରଲୁବ୍‌ଧହୋଇ ରାବଣ ସୀତାଙ୍କୁ ଅପହରଣ କରିଥିବା ଯୋଗୁଁ ରାମ ରାବଣ ଯୁଦ୍ଧ ହୋଇଥିଲାବୋଲି ପାଠକ ମନରେ ଧାରଣା ଆସେ । ନିଶ୍ଚିତଭାବେ ସୀତା ଅନନ୍ୟା ସୁନ୍ଦରୀ ଥିଲେ । କମ୍ବନ ସୂର୍ପଣଖା ମୁହଁରେ ମଧ୍ୟ ସୀତାଙ୍କ ସୌନ୍ଦର୍ଯ୍ୟକୁ ସ୍ୱୀକାର କରାଇ ନେଇଛନ୍ତି । କିନ୍ତୁ କମ୍ବନଙ୍କପାଇଁ ରାମଙ୍କ ସୌନ୍ଦର୍ଯ୍ୟ ମଧ୍ୟ ବର୍ଣ୍ଣନାନୀତ ଥିଲା । ଭାବୀଦଲୋଚନଙ୍କ ଶରୀରଉପରେ ଯାହାର ଥରେ ଦୃଷ୍ଟି ପଡୁଥିଲା ସେ ଚିରଦିନପାଇଁ ତାଙ୍କ ସୌନ୍ଦର୍ଯ୍ୟ ଆକର୍ଷଣରେ ବନ୍ଦୀହୋଇ ରହି ଯାଉଥିଲା ।

ପଞ୍ଚବଟୀରେ କୁଟୀରକରି ରହିଥିବା ବେଳେ ରାମଙ୍କ ଉପରେ ସୂର୍ପଣଖାର ଦୃଷ୍ଟି ଥରେ ପଡ଼ିଗଲା । ବିଶ୍ରବାଙ୍କ ଝିଅ, କୁବେର ଓ ରାବଣଙ୍କ ଭଉଣୀବୋଲି ସୂର୍ପଣଖା ରାମଙ୍କୁ ନିଜର ପରିଚୟଦେଇ ପ୍ରଥମ ସାକ୍ଷାତରେ ହିଁ ରାମଙ୍କ ପ୍ରଣୟ ପ୍ରାର୍ଥିନୀ ହେଲା । ରାମଙ୍କୁ ନିଜର ପ୍ରକୃତ ନାମ ନ ଜଣାଇ ସେ ନିଜକୁ କାମବଲ୍ଲୀବୋଲି ପରିଚୟ ଦେଇଥିଲା । କାମବଲ୍ଲୀସହ କୌଣସି ପ୍ରକାର ସଂପର୍କ ସଂସ୍ଥବନୁହଁ ବୋଲି ରାମ ଯୁକ୍ତି କରିଥିଲେ । କାମାତୁରା କାମବଲ୍ଲୀ ରାମଙ୍କର କୌଣସି ଯୁକ୍ତି ନଶୁଣି ତାଙ୍କୁ ସମ୍ଭୋଗପାଇଁ ବାଧ୍ୟ କରୁଥିବାବେଳେ ପର୍ଣ୍ଣ କୁଟୀର ଭିତରୁ ସୀତା ବାହାରି ଆସିଲେ । ସୀତାଙ୍କ ସୌନ୍ଦର୍ଯ୍ୟଦେଖି କାମବଲ୍ଲୀ ଚକିତହୋଇ ଯାଇଥିଲେ ମଧ୍ୟ ତା'ପରେ କୌଣସି ରାକ୍ଷସୀ ମାୟା କରି ସୀତା ରୂପ ଧାରଣ କରି ରାମଙ୍କ ପାଖରେ ରହିଯାଇଛି ଭାବି ସେ ରାମଙ୍କୁ ରାକ୍ଷସୀମାନଙ୍କ ମାୟା ଶକ୍ତି ବିଷୟରେ ସାବଧାନ କରାଇ ସୀତାଙ୍କୁ ଛାଡ଼ିଦେବାକୁ କହିଥିଲା । ରାମ କାମବଲ୍ଲୀ କଥା ନଶୁଣି ସୀତାଙ୍କସହ ପର୍ଣ୍ଣକୁଟୀର ଭିତରକୁ ଚାଲିଗଲେ । ସୂର୍ପଣଖା ବ୍ୟର୍ଥ ମନୋରଥହୋଇ ନିଜର ଆଶ୍ରୟ ସ୍ଥଳୀକୁ ଫେରିଆସି କାମଜ୍ୱାଳାରେ ଅସ୍ଥିରହୋଇ ସର୍ବତ୍ର ରାମଙ୍କୁହିଁ ଦେଖିବାକୁ ଲାଗିଲା । କଳ୍ପନାରେ ସେ ବାରମ୍ବାର ରାମଙ୍କୁ ପ୍ରଗାଢ଼ ଆଲିଙ୍ଗନକରି ପକାଉଥାଏ, ଚୁମ୍ବନ ଦେଇଦେଉଥାଏ । ସକାଳହେବା ମାତ୍ରେ ସେ ଅଧୈର୍ଯ୍ୟ ହୋଇ ସେହି ପର୍ଣ୍ଣକୁଟୀରପାଖକୁ ଯାଇ ସୀତାଙ୍କୁ ଦୈବାତ୍ ପୁଷ୍ପ ଚୟନ କରୁଥିବାଦେଖି ତାଙ୍କ ପଛେ ପଛେ ଯାଇ ତାଙ୍କୁ ମାରିଦେବାକୁ ବସିଲା । ସଦା ସତର୍କ ଲକ୍ଷ୍ମଣ ଏହା ଦେଖିପାରି ସୂର୍ପଣଖାକୁ ଧରି ନେଲେ ଓ ତାକୁ ନାରୀ ବୋଲି ଜାଣି ଜୀବନରେ ନମାରି ତାହାର ନାକ, କାନ ଓ ସ୍ତନ କାଟିଦେଇ ତାକୁ ଛାଡ଼ିଦେଲେ । ସେହି ରକ୍ତାକ୍ତ ଅବସ୍ଥାରେ ମଧ୍ୟ ସେ ରାମଙ୍କୁ ଦେଖିଦେଇ ତାଙ୍କୁ ପ୍ରଣୟ ନିବେଦନ କରି ବସିଲା । ରାମ ତାକୁ ପୁଣିଥରେ ପ୍ରତ୍ୟାଖ୍ୟାନ କଲେ । ଏହିଥିରୁହେଲା ରାମ ରାବଣ ଯୁଦ୍ଧର ସୃଷ୍ଟି । ସୂର୍ପଣଖା ଲଙ୍କାଯାଇ ସୀତାଙ୍କୁ ଅପହରଣ କରି ଆଣିବାକୁ ରାବଣକୁ ପ୍ରବର୍ତ୍ତାଇ ଥିଲେ ମଧ୍ୟ ରାମଚନ୍ଦ୍ରଙ୍କୁ ଜୀବନରେ ନମାରି ଧରିଆଣି ତା ଜିମା ଦେଇଦେବାପାଇଁ ସେ କହିଥିଲା ।

ବାଲ୍ମୀକି ରାମାୟଣଠୁ ବିଷୟ ନିର୍ବାଚନ ଓ ବର୍ଣ୍ଣନାରେ କମ୍ବନ ଯେଉଁଠି ପୃଥକ ପନ୍ଥା ଗ୍ରହଣ କରିଛନ୍ତି ତାହା ବଡ଼ ମହତ୍ ପୂର୍ଣ୍ଣ ଓ ଉଲ୍ଲେଖଯୋଗ୍ୟ । ତତ୍‌କାଳୀନ ସାମାଜିକ ପରିବେଶ ଓ କମ୍ବନଙ୍କ ଜୀବନଦର୍ଶନ ଏହି ପୃଥକ ବର୍ଣ୍ଣନାରୁ ସ୍ପଷ୍ଟ ହୋଇଯାଏ ।

(୧) ବିଶ୍ୱାମିତ୍ରଙ୍କ ସହ ରାମଲକ୍ଷ୍ମଣଙ୍କ ମିଥିଳା ପ୍ରବେଶର ସ୍ୱତନ୍ତ୍ର ଚିତ୍ର କମ୍ବନ ଦେଇଛନ୍ତି । ମିଥିଳା ନଗରର ବିସ୍ତୃତ ବର୍ଣ୍ଣନା ରାମସୀତାଙ୍କ ପରସ୍ପର ଦର୍ଶନ ଓ ସେଥିରୁ ପ୍ରଣୟର ସୃଷ୍ଟି ଓ ସେମାନଙ୍କ ବିରହ ବର୍ଣ୍ଣନା କରାଯାଇଛି । ଏହାପରେ ଜନକଙ୍କ ଦ୍ୱାରା ରାମଙ୍କ ସ୍ୱାଗତ କରାଯାଇଛି ।

(୨) ଦଶରଥଙ୍କ ମିଥିଳା ଯାତ୍ରା ପଞ୍ଚ ସର୍ଗରେ ବର୍ଣ୍ଣନା କରାଯାଇଛି । ଦଶରଥଙ୍କସହ ସେନା ଓ ଅନ୍ତଃପୁରର ସ୍ତ୍ରୀଲୋକମାନେ ମଧ୍ୟ ଯାଉଛନ୍ତି ।

(୩) ସୀତାଙ୍କ ହରଣ ବେଳେ ରାବଣ ସୀତାଙ୍କୁ ସ୍ପର୍ଶ ନକରି ସେ ଠିଆ ହୋଇଥିବା ଭୂମି ସହ ତାଙ୍କୁ ରଥଉପରକୁ ନେଇଯାଇଛି । ବାଲ୍ମୀକି ରାମାୟଣରେ ସୀତାଙ୍କ ହାତ ଝିଂଜି ନେଇ ସୀତାଙ୍କୁ ରଥ ଉପରକୁ ନେଇ ଯାଇଥିବା ବର୍ଣ୍ଣନା ମିଳେ ।

(୪) ଯୁଦ୍ଧକାଣ୍ଡରେ ରାମ ନାରାୟଣଙ୍କ ଅବତାର, ତେଣୁ ତାଙ୍କ ସହ ଯୁଦ୍ଧ କରିବାର ଭୟାବହ ପରିଣତି କଥା ବିଭୀଷଣ ରାବଣଆଗରେ ବର୍ଣ୍ଣନାକରିଛି । ସେହି ପ୍ରସଙ୍ଗରେ ବିଭୀଷଣ ନାରାୟଣଙ୍କ ନୃସିଂହ ଅବତାର କଥା ମଧ୍ୟ କହିଛି ।

(୫) ଯୁଦ୍ଧ ଚାଲିଥିବା ବେଳେ ମରୁତ ନାମକ ରାକ୍ଷସ ଜନକଙ୍କ ରୂପଧାରଣ କରି ସୀତାଙ୍କୁ ରାବଣର ପ୍ରଣୟ ନିବେଦନ ମାନି ନେବାକୁ ପ୍ରବର୍ତ୍ତାଇଛି ।

(୬) ଯୁଦ୍ଧ ପୂର୍ବରୁ ରାକ୍ଷସମାନଙ୍କର ସମ୍ଭୋଗ ବର୍ଣ୍ଣନା କରି ସେମାନଙ୍କ ମୂଲ୍ୟ ବୋଧର ଅବକ୍ଷୟପ୍ରତି କମ୍ବନ ସଙ୍କେତ କରାଯାଛି ।

ଏହାଛଡ଼ା ଅହଲ୍ୟାଙ୍କୁ ସମ୍ଭୋଗ କରିବା ପରେ ଇନ୍ଦ୍ର ବିରାଡ଼ି ରୂପ ଧରି ପଳାୟନ କରିବା, ମନ୍ଥରାର ରାମଙ୍କ ପ୍ରତି ବିଦ୍ୱେଷର କାରଣ ଓ ନିଦ୍ରାଦେବୀଙ୍କ ମାନବୀକରଣ ବର୍ଣ୍ଣନା ଶବରୀଙ୍କ ମୋକ୍ଷ କଥା, ହନୁମାନଙ୍କ ଆଭୂଷଣଗୁଡ଼ିକର ଉଲ୍ଲେଖ, ଲକ୍ଷ୍ମଣଙ୍କ ଦ୍ୱାରା ଦୁନ୍ଦୁଭି ରାକ୍ଷସର କଙ୍କାଳ ଫୋପଡା ଯିବା, ରାମ ଓ ସୀତାଙ୍କ ଦ୍ୱାରା ହନୁମାନଙ୍କୁ ପ୍ରଦତ୍ତ ଅଭିଜ୍ଞାନ ସ୍ୱୟଂପ୍ରଭା ଓ ସଂପାତି କଥା, ବିଭୀଷଣର ଝିଅରୂପେ ତ୍ରିଜଟା କଥା, ମନ୍ଦୋଦରୀଙ୍କର ସହଗମନ, ଲକ୍ଷ୍ମଣଙ୍କ ପ୍ରତି ବ୍ରହ୍ମାସ୍ତ୍ର ଓ ପରେ ନାଗଫାଶ ପ୍ରୟୋଗ ଓ ଲକ୍ଷ୍ମଣଙ୍କର ପରାଜିତ ହେବା, ମାୟା ସୀତା ବଧ ପରେ ବିଭୀଷଣ ମହୁମାଛି ହୋଇ ଲଙ୍କାରେ ପ୍ରବେଶ କରିବା, କୁମ୍ଭକର୍ଣ୍ଣ ଓ ଇନ୍ଦ୍ରଜିତ ବଧର ମୌଳିକ ବର୍ଣ୍ଣନା ଭରତଙ୍କ ଆତ୍ମହତ୍ୟା ବିଚାର ପ୍ରଭୃତି ବହୁକଥା କମ୍ବନଙ୍କ ରାମାୟଣର ବିଶେଷତା ନନ୍ଦିଗ୍ରାମକୁ ଫେରିଆସି ରାମ ଓ ସୀତା ତପସ୍ୱୀ ବେଶ ପରିତ୍ୟାଗ କରି ରାଜକୀୟ ବେଶ ପରିଧାନ କରିବାରେ କମ୍ବନ ରାମାୟଣ ଶେଷ କରିଛନ୍ତି । ଚଉଦ ବର୍ଷ ପରେ ସିଂହାସନ ଆରୋହଣ ପାଇଁ ଆଉ ଥରେ ତିଥି ଠିକ୍ କରାଯାଇଛି ।

(୩) କମ୍ବନ ରାମାୟଣର ଓଡ଼ିଆ ଅନୁବାଦ ଏ ଯାଏଁ ହୋଇନାହିଁ । କେବଳ ଅଯୋଧ୍ୟା କାଣ୍ଡର ପଦ୍ୟାନୁବାଦ ରାଜଗୋପାଳଚାରୀଙ୍କ ଇଂରେଜୀରୁ ଅନୂଦିତ ଗ୍ରନ୍ଥରୁ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର କରିଛନ୍ତି । ୧୯୭୮ ମସହାରେ ରାଜାଜୀଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ବହିଟି ପ୍ରସ୍ତୁତ କରାଯାଇଥିଲା ।

ତାମିଲନାଡୁରେ ହିନ୍ଦୁମାନଙ୍କ ଦେବାଦେବୀ, ଶାସ୍ତ୍ର ଓ ଗ୍ରନ୍ଥ ବିରୁଦ୍ଧରେ ସ୍ୱର୍ଗତ ରାମସ୍ୱାମୀ ନାଇକର୍‌ଙ୍କ ନେତୃତ୍ୱରେ ଆନ୍ଦୋଳନ ଚାଲିଥିଲା । ଏ ଆନ୍ଦୋଳନରେ ବିଷମୟ ପରିଣତି ଯୋଗୁଁ ସେହିଅଞ୍ଚଳରେ ବିଭିନ୍ନ ଗୋଷ୍ଠୀର ଲୋକେ ପରସ୍ପର ପ୍ରତି ବିଦ୍ୱେଷ ଓ ଘୃଣା ମନୋଭାବ ପୋଷଣ କରିବାକୁ ଆରମ୍ଭ କରିଥିଲେ । କିନ୍ତୁ ସେହି ଦେଶରେ ପ୍ରାୟ ଏକାଦଶ ଶତାବ୍ଦୀ ବେଳକୁ ମହାକବି କମ୍ବନ ବାଲ୍ମୀକି ରାମାୟଣର ଅନୁବାଦ କାର୍ଯ୍ୟ ଆରମ୍ଭ କରିଥିଲେ । ବାଲ୍ମୀକିଙ୍କ ମୂଳଲେଖା ୨୪,୦୦୦ ଶ୍ଳୋକକୁ ସେ ତାମିଲ ଭାଷାରେ ୧୦,୫୦୦ ଶ୍ଳୋକ ଭିତରେ ଆଣି ରାମାୟଣର ଆତ୍ମା ପ୍ରକାଶ କରିବାକୁ ଚେଷ୍ଟା କରିଥିଲେ । ବାଲ୍ମୀକି ରାମାୟଣର ବିଶାଳତା ଓ ଗରିମା କଥା ଉଲ୍ଲେଖ କରି କମ୍ବନ ଲେଖିଛନ୍ତି : ବିଶାଳ କ୍ଷୀର ସମୁଦ୍ର କୂଳରେ ମୁଁ ସାମାନ୍ୟ ବିରାଡ଼ିଟିଏ, ସମୁଦ୍ର ଯାକର କ୍ଷୀରକୁ ଚାଟି ଦେବା ପାଇଁ ଇଚ୍ଛା କରି ବସିଛି ।

କଥିତ ଅଛି ଯେ କମ୍ବନଙ୍କ ପୂର୍ବରୁ ଓଟକୁତନ୍ ତାମିଲ୍ ଭାଷାରେ ରାମାୟଣ ଅନୁବାଦ କରିଥିଲେ । କିନ୍ତୁ କମ୍ବନଙ୍କ ଅନୂଦିତ ରାମାୟଣର ପଦ ମାଧୁର୍ଯ୍ୟ ଶୁଣିବାପରେ ସେ ତାଙ୍କର ରାମାୟଣକୁ ନଷ୍ଟ କରିଦେଇଥିଲେ । କମ୍ବନଙ୍କ ଅନୁବାଦ କାର୍ଯ୍ୟରେ ତାଙ୍କୁ ବହୁ ସଂସ୍କୃତ ପଣ୍ଡିତ ସାହାଯ୍ୟ କରିଥିଲେ । ସମଗ୍ର ଭାରତ ବର୍ଷର ସାଂସ୍କୃତିକ ଓ ମୂଲ୍ୟବୋଧର ଏକତା ପାଇଁ ସ୍ୱେଚ୍ଛାଚାରୀ ସଂସ୍କୃତିହନ୍ତାମାନଙ୍କଠୁ ଦେଶର ପରଂପରା ବଞ୍ଚାଇବାପାଇଁ କମ୍ବନ ନିଜର ଜୀବନ ଏହି ମହାନ୍ ଗ୍ରନ୍ଥର ଅନୁବାଦପାଇଁ ଉତ୍ସର୍ଗ କରିଥିଲେ । ବହୁ ପୂର୍ବରୁ ଅଗସ୍ତି ଋଷି ଏହିପରି କାର୍ଯ୍ୟ ପାଇଁ ଜୀବନ ଦାନ ଦେଇଥିଲେ । ତାମିଲ ବାଲ୍ମୀକି କମ୍ବନଙ୍କୁ ତାଙ୍କ ରାମାୟଣପାଇଁ ଭାରତୀୟମାନେ ସବୁଦିନେ ମନେ ରଖିବେ ।

ସହାୟକ ଗ୍ରନ୍ଥ :—

(୧) ଫାଦର୍ କମଲ୍ ବୁଲେକ୍, ରାମକଥା (ହିନ୍ଦୀ), ହିନ୍ଦୀ ପରିଷଦ ପ୍ରକାଶନ, ପ୍ରୟାଗ ବିଶ୍ୱବିଦ୍ୟାଳୟ, ୧୯୭୧ ।

(୨) ନିତ୍ୟାନନ୍ଦ ମହାପାତ୍ର, ରାମାୟଣ ଅଯୋଧ୍ୟାକାଣ୍ଡ, (ଓଡ଼ିଆ), ଭାରତୀୟ ବିଦ୍ୟାଭବନ, ଓଡ଼ିଶା, ୧୯୭୮ ।

(୩) ଆ. କେ. ନାରାୟଣଙ୍କ ରାମାୟଣ (ଇଂରାଜୀ), ଇଣ୍ଡିୟାନ୍ ଥଟ୍ ପବ୍ଲିକେଶନସ୍, ମହୀଶୂର, ୧୯୭୩ ।

ପ୍ରାଧ୍ୟାପକ, ଦର୍ଶନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର-୪

ସଙ୍କଟଜନକ ମୁହୂର୍ତ୍ତରେ ଭାରତ ଜାଗ୍ରତ ହୁଏ ଓ ନୂତନ ଗଠନମୂଳକ ପ୍ରଚେଷ୍ଟା ନେଇ ତାହାର ମୁକାବିଲା କରେ । ଏହି ଗଣ୍ଡଗୋଳିଆ ପରିସ୍ଥିତି ମଧ୍ୟରୁ ଜନ୍ମନିଏ ଏପରି ଏକ ଧାମରା ଯାହାକି 'ଆମେ ଏକ'— ଏହି ଚେତନା ସୃଷ୍ଟି କରେ, ଶୃଂଖଳା ଆଣେ ଓ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଗଭୀର ମାନବିକ ସଂପର୍କ ପ୍ରତିଷ୍ଠା କରେ ।

ଶ୍ରୀ ରାଜୀବ ଗାନ୍ଧୀ

# ଭାରତୀୟ ବାୟୁସେନାର ଯୋଗାଯୋଗ ସ୍କ୍ୱାର୍ଡ୍ରନ୍

ଉଇଙ୍ଗ୍ କମାଣ୍ଡର, ଆର୍. ଶଙ୍କର

ପଚିଶ ବର୍ଷ ତଳେ ବ୍ରିଟେନ ବିମାନ ବାହିନୀ (ଆର. ଏ. ଏଫ୍)ର ମୁଖ୍ୟ ସାର୍ ଥୋମାସ୍ ପାଇକ୍ ଭାରତକୁ ସରକାରୀ ଗସ୍ତରେ ଆସିଥିବାବେଳେ ତାଙ୍କର ଆଗ୍ରା ଯାତ୍ରା କରିବାର କାର୍ଯ୍ୟକ୍ରମ ଥାଏ । ଆଗ୍ରା ଯିବା ପାଇଁ ଭାରତୀୟ ବାୟୁସେନାର ଏକ "ଭିସ୍‌କାଉଣ୍ଟ" ବିମାନରେ ବସି ନିଜର ସିଟ୍‌ବେଲଟ୍‌କୁ ଟାଇଟ୍ କଲାବେଳେ ସେ ହଠାତ୍ ଏକ କପ୍ ଗରମ କଫି ପାଇଁ ଅର୍ଡର ଦେଲେ । ଫ୍ଲାଇଟ୍ ଷ୍ଟିଓ୍ୱାର୍ଡ ଆଦେଶ ପାଇବା କ୍ଷଣି ଏକ କପ୍ କଫି ଆଣିଲେ ଏବଂ ଏୟାର୍ ମାର୍ଶାଲ ପାଇକ୍ କହିବା ମୁତାବକ ସେ ତାକୁ ତାଙ୍କର ବସିବା ସ୍ଥାନ ସମ୍ମୁଖରେ ଥିବା ଟେବୁଲ ଉପରେ ରଖି ଦେଲେ । ତା'ପରେ ବିମାନଟି ଆକାଶକୁ ଉଠି ଯିବା ସମୟରେ ଆଗ୍ରାରେ ଅବତରଣ କଲା କିନ୍ତୁ ଅର୍ଡର ହୋଇଥିବା କଫି କପ୍‌ଟି ସେଇମିତି ସଦ୍‌ବ୍ୟବହାର ନହୋଇ ପଡି ରହିଥାଏ । ବିମାନ ଯାତ୍ରା ସରିଲା ପରେ ବିମାନର ପାଇଲଟ୍ ଯେତେବେଳେ ଅତିଥି ଏୟାରଚିଫ୍‌ଙ୍କୁ ବିଦାୟ ଦେବାକୁ ଆସିଲେ, ସେତେବେଳେ ସାର୍ ଥୋମାସ୍ ସେହି କଫି କପ୍‌କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ 'ପୃଥିବୀର ଯେ କୌଣସି ସ୍ଥାନକୁ ବିମାନରେ ଯାତ୍ରା କଲେ ମୁଁ ଏହିପରି ଏକ କାର୍ଯ୍ୟ କରିଥାଏ । କିନ୍ତୁ ମୋର ଦୀର୍ଘ ଫ୍ଲାଇଂ ଜୀବନ ମଧ୍ୟରେ ଏହି ହେଉଛି ପ୍ରଥମ ଘଟଣା ଯେ ସମଗ୍ର ବିମାନ ଯାତ୍ରା ସମୟରେ କଫି କପ୍‌ରୁ ସାମାନ୍ୟତମ କଫି ମଧ୍ୟ ଟହଲି ତଳେ ବା ଟେବୁଲ ଉପରେ ପଡିନାହିଁ । ବାସ୍ତବିକ ତୁମେ ଖୁବ୍ ଚମତ୍କାର ବିମାନ ଚାଳନା କରିଛ । ତୁମର ବିମାନ ଉତ୍‌କ୍ଷେପଣ ଓ ଅବତରଣ ପ୍ରକ୍ରିୟା ଅତି ସୁନ୍ଦର ଓ ମନୋରମ ହୋଇଛି । ସେଥିପାଇଁ ମୋର ତୁମକୁ ଅଜସ୍ର ଧନ୍ୟବାଦ ।" ରୟାଲ୍ ଏୟାର ଫୋର୍ସର ମୁଖ୍ୟଙ୍କଠାରୁ ଅଜସ୍ର ପ୍ରଶଂସା ଓ ଧନ୍ୟବାଦ ପାଇବା ଗୌରବର ଅଧିକାରୀ ହୋଇଥିଲେ ସେଦିନ ସେହି ଭିସ୍‌କାଉଣ୍ଟ ବିମାନର ପାଇଲଟ୍ ସ୍କ୍ୱାର୍ଡ୍ରନ ଲିଡର୍ ବି. ଡବ୍ଲ୍ୟୁ. ଚୌହାନ୍ ଯିଏ ପରେ ନିଜର କୃତିତ୍ୱ ବଳରେ ଏୟାର ମାର୍ଶାଲ୍ ପଦବୀ ପର୍ଯ୍ୟନ୍ତ ଉନ୍ନୀତ ହୋଇଥିଲେ ।

ସାର ଥୋମାସ୍ ପାଇକ୍‌ହିଁ ଏୟାର ହେଡକ୍ୱାର୍ଟରସ୍ ଯୋଗାଯୋଗ ସ୍କ୍ୱାର୍ଡ୍ରନ ଅଧିନସ୍ଥ ବିମାନରେ ପ୍ରଥମ କରି ପରିଭ୍ରମଣ କରିନଥିଲେ ବରଂ ଏ କ୍ଷେତ୍ରରେ ଯୋଗାଯୋଗ ସ୍କ୍ୱାର୍ଡ୍ରନ୍ ବିମାନରେ ଯାତ୍ରା କରିଥିବା ଯାତ୍ରୀମାନଙ୍କର ପରିଚୟ ବାସ୍ତବପକ୍ଷେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବିଶିଷ୍ଟ ବ୍ୟକ୍ତିମାନଙ୍କର ଏକ ଲମ୍ବା ପରିଚୟାବଳୀ ସଙ୍ଗେ ତୁଳନୀୟ । ସ୍କ୍ୱାର୍ଡ୍ରନ୍ ଅଧୀନସ୍ଥ ବିମାନଗୁଡିକରେ ବିଭିନ୍ନ ସମୟରେ ଯାତ୍ରା କରିଥିବା ବ୍ୟକ୍ତିଙ୍କ ମଧ୍ୟରେ ଆମେ ଏଲନୋର ରୁଜ୍‌ଭେଲ୍‌ଟ, ଲର୍ଡ ମାଉଂଟ୍‌ବ୍ୟାଟେନ୍, ମାର୍ଶାଲ ଟିଟୋ, ରାଣୀ ଏଲିଜାବେଥ୍, ଜବାହରଲାଲ ନେହେରୁ, ଚୌ-ଏନ୍-ଲାଇ, ରାଷ୍ଟ୍ରପତି ନାସେର, ମିଷ୍ଟର କ୍ରୁଷ୍‌ଚେଭ, ଲର୍ଡ ମ୍ୟାକ୍‌ମିଲାନ୍; ରାଷ୍ଟ୍ରପତି ମିତରା ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଇତ୍ୟାଦି ଖ୍ୟାତନାମା ଜନନାୟକ ଏବଂ ନେତାଙ୍କୁ ଦେଖି ପାରିବା । କେବଳ ଏତିକି ନୁହେଁ, ବିଭିନ୍ନ ସମୟରେ ଭାରତର ସବୁ ରାଷ୍ଟ୍ରପତି, ଉପରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ପ୍ରତିରକ୍ଷାମନ୍ତ୍ରୀ ତଥା ତିନି ପ୍ରତିରକ୍ଷା ବାହିନୀର ମୁଖ୍ୟଗଣ ପ୍ରାୟ ସର୍ବଦା ବାୟୁସେନାର ଯୋଗାଯୋଗ ସ୍କ୍ୱାର୍ଡ୍ରନ ବିମାନରେହିଁ ଯାତ୍ରା କରିଆସିଛନ୍ତି ।

୧୯୪୭ ମସିହା ନଭେମ୍ବର ମାସ ୧ ତାରିଖ ଦିନ ଦିଲ୍ଲୀସ୍ଥିତ ପାଲମ୍‌ଠାରେ କେତେଗୋଟି "ଏୟାରସିପ୍ ଅକ୍ସ୍‌ଫୋର୍ଡ" ଜାତିର ବିମାନକୁ ନେଇ ଭାରତୀୟ ବାୟୁସେନାର ପ୍ରଥମ କମ୍ୟୁନିକେଶନ (ଯୋଗାଯୋଗ) ସ୍କ୍ୱାର୍ଡ୍ରନ ଜନ୍ମ ଗ୍ରହଣ କରିଥିଲା । ୧୯୪୮ ମସିହାରେ ଭାରତୀୟ ଉପମହାଦେଶର ସାଂପ୍ରଦାୟିକ ହିଂସାକାଣ୍ଡ ଦ୍ୱାରା ଧ୍ୱଂସବିଧ୍ୱଂସ୍ତ ହୋଇଥିବା ମର୍ମନ୍ତୁଦ ସ୍ଥଳୀଗୁଡିକ ଆକାଶମାର୍ଗରୁ ପଣ୍ଡିତ ନେହେରୁଙ୍କୁ ବୁଲାଇ ଦେଖାଇ ଏହି ସ୍କ୍ୱାର୍ଡ୍ରନ ତା'ର ପ୍ରଥମ ଭଲ ସଫଳତା ହାସଲ କରିଥିଲା । ସେହିବର୍ଷ ଏହି ସ୍କ୍ୱାର୍ଡ୍ରନରେ 'ଡିଭୋନ୍' ବିମାନ ଖଞ୍ଜାଯିବା ପରେ ଏହାର କାର୍ଯ୍ୟକାରିତା ଏବଂ ଗୁରୁତ୍ୱ ବହୁ ପରିମାଣରେ ବୃଦ୍ଧି ପାଇଲା । ୧୯୫୨ ମସିହା ଫେବ୍ରୁଆରୀ ୩ ତାରିଖ ଦିନ ୪ ଜଣ ଆର୍ମି ଜେନେରାଲ ଏବଂ ଦୁଇଜଣ ବ୍ରିଗେଡିୟରଙ୍କୁ ଧାରଣ କରି ଲକ୍ଷ୍ନୌ ବିମାନ ଘାଟିରୁ ଗୋଟିଏ ଡଭୋନ୍ ବିମାନ ଆକାଶ ମାର୍ଗକୁ ଉଠିଗଲା ପରେ ପାଇଲଟ୍ ଫ୍ଲାଇଟ୍ ଲେଫ୍‌ଟନାଣ୍ଟ ସୁବାସ ବିଶ୍ୱାସ ଲକ୍ଷ୍ୟ କଲେ ଯେ ବିମାନ ନମ୍ନପାର୍ଶ୍ୱରେ ଥିବା ଗୋଟିଏ ଇଞ୍ଜିନ୍‌ରେ ନିଆଁ ଲାଗି ଏହା ସଂପୂର୍ଣ୍ଣ ରୂପେ ବିମାନ ତ୍ରୁଟି ହୋଇଯାଇଛି । ଏହିପରି ଏକ ସଙ୍କଟମୟ ପରିସ୍ଥିତିରେ ସ୍ୱଳ୍ପ ଆଲୋକ ଥିବା ଯୋଗୁ କିଛି ଦେଖାଯାଉନଥିଲେ ମଧ୍ୟ ସବୁ ବିପଦକୁ ଆଖି ବୁଜି ଦେଇ ଅତି ସାହସିକତାର ସହିତ ସେ ବିମାନଟିକୁ ଗୋଟିଏ ଛୋଟ ସମତଳ ସ୍ଥଳଭାଗରେ ଅବତରଣ କରାଇ ଅଶୋକଚକ୍ର (ପ୍ରଥମଶ୍ରେଣୀ) ସମ୍ମାନ ଲାଭ କରିଥିଲେ ।

ଏହାପରେ ଉକ୍ତ ସ୍କ୍ୱାର୍ଡ୍ରନ ଅନ୍ତର୍ଗତ ଏକ "ଡାକୋଟା" ବିମାନ ପୃଥିବୀର ସର୍ବୋଚ୍ଚ ଉଚ୍ଚତାରେ ଅବସ୍ଥିତ "ଚୁଶୁଲ" ବିମାନ ଘାଟୀରେ ନିରାପଦରେ ଅବତରଣ କରି ବିଶ୍ୱ ରେକର୍ଡ ସୃଷ୍ଟି କରିଥିଲା । ପୁନଶ୍ଚ ଯୋଗାଯୋଗ ସ୍କ୍ୱାର୍ଡ୍ରନର ଗୋଟିଏ ଲ୍ୟୁଶନ୍ ବିମାନ ୧୪,୨୦୦ ଫୁଟ ଉଚ୍ଚତାରେ ଅବସ୍ଥିତ ଲସା ବିମାନ ଘାଟୀରେ ଓହ୍ଲାଇ ଆଉ ଏକ ବିଶ୍ୱ ରେକର୍ଡ ସୃଷ୍ଟି କରିଥିଲ । କେବଳ ଏହି କାରଣରୁହିଁ ଉପରୋକ୍ତ ଇଲ୍ୟୁଶିନ୍ ବିମାନର ଦୁଇ ପାଇଲଟ୍ ସ୍କ୍ୱାର୍ଡ୍ରନ ଲିଡର୍ ଜି. ନଟରାଜନ୍ ଏବଂ ପାଇଲଟ୍ ଲେଫ୍‌ଟନାଣ୍ଟ ଏନ୍. ଏମ୍. ରାଇଙ୍କୁ ତୃତୀୟ ଆଣ୍ଟାର୍କଟିକା ଅଭିଯାନରେ ସଭ୍ୟ-ଭାବରେ ଗ୍ରହଣ କରାଯାଇ ଏମ୍. ଆଇ.-୮ ହେଲିକପ୍‌ଟରର ଚାଳନା ଦାୟିତ୍ୱ ଅର୍ପଣ କରାଯାଇଥିଳ ।

ଦେଶ ସ୍ୱାଧୀନ ହେବା ଦିନଠାରୁ ଆମେ ସାମନା କରିଥିବା ସବୁ ରଣାଙ୍ଗନରେ କମ୍ୟୁନିକେଶନ ସ୍କ୍ୱାର୍ଡ୍ରନର ବିମାନଗୁଡିକ ସଫଳତାର ସହ ନିୟୋଜିତ କରାଯାଇଛି । ୧୯୪୭ ମସିହା ସ୍ୱାଧୀନତା ପରେ ପରେ ପାକିସ୍ତାନ ପକ୍ଷରୁ ଏକ ଅଘୋଷିତ ଯୁଦ୍ଧ ଆରମ୍ଭ ହେବାବେଳେ ଏହି ସ୍କ୍ୱାର୍ଡ୍ରନ ପକ୍ଷରୁ ବିଜୁଳି ବେଗରେ ସୈନ୍ୟ, ଅସ୍ତ୍ରଶସ୍ତ୍ର ଏବଂ ରସଦ୍ ଯୋଗାଣ କରି ଠିକଣା ସ୍ଥାନକୁ ପ୍ରେରଣ କରାଯିବା ଦ୍ୱାରା ଶତ୍ରୁ ପକ୍ଷର ସମସ୍ତ ଚକ୍ରାନ୍ତକୁ ପଣ୍ଡ କରି ଦିଆଗଲା । ୧୯୬୧ ମସିହାରେ ଗୋଆକୁ ମୁକ୍ତ କଲାବେଳେ . ମୋଟ ପ୍ରାୟ ୩୩ ଘଣ୍ଟାକାଳ ଉଡି ଏହାର ବିମାନଗୁଡ଼ିକ ସୈନ୍ୟ ପରିବହନ ଓ ଅସ୍ତ୍ରଶସ୍ତ୍ର ଯୋଗାଣ କ୍ଷେତ୍ରରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ । ୧୯୬୨ ମସିହା ଯୁଦ୍ଧରେ ସ୍କ୍ୱାର୍ଡ୍ରନର ବିମାନଗୁଡିକ ମୋଟ ୧୪୭ ଘଣ୍ଟା ଆକାଶ ମାର୍ଗରେ ଉଡି ଦୁର୍ଗମ କ୍ଷେତ୍ରକୁ ସୈନ୍ୟ ପରିବହନ, ମୁତୟନ ତଥା ଯୁଦ୍ଧ କ୍ଷେତ୍ରକୁ ଗଣ୍ୟମାନ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ନେବା ଆଣିବା କରି ଉଲ୍ଲେଖନୀୟ ସେବା ପ୍ରଦର୍ଶନ କରିଥିଲେ । ସେହିପରି ୧୯୬୫ ଓ ୧୯୭୧ ମସିହା ଯୁଦ୍ଧରେ ଏହି ସ୍କ୍ୱାର୍ଡ୍ରନ ଦ୍ୱାରା ପ୍ରଦର୍ଶିତ ହୋଇଥିବା ଉଚ୍ଚକୋଟୀର ସାହସ, ତ୍ୟାଗ ଓ ସେବାର କୌଣସି ତୁଳନା କରାଯାଇ ପାରିବ ନାହିଁ ।

ବିଭିନ୍ନ ଘଟଣାରେ ମିଳିତ ଜାତିସଂଘ ଏବଂ ପଡୋଶୀ ରାଷ୍ଟ୍ରଗୁଡିକୁ ସାହାଯ୍ୟ ଓ ସହାୟତା ଯୋଗାଇ ଦେବାରେ ଏହି ସ୍କ୍ୱାର୍ଡ୍ରନକୁ ଡକରା ପଡିଲାବେଳେ ଏହା ଚରମ ନିଷ୍ଠା ଓ ସାଧୁତାର ସହ ତାହା ସଂପନ୍ନକରିଛି । ଅତୀତରେ ଇଣ୍ଡୋ-ଚାଇନାର ରଣାଙ୍ଗନକୁ ଜାତିସଂଘ ଶାନ୍ତିରକ୍ଷାକାରୀ ସୈନ୍ୟବାହିନୀ ପ୍ରେରଣ, ଶ୍ରୀଲଙ୍କାର ବନ୍ୟା ବିଧ୍ୱସ୍ତ ଅଞ୍ଚଳରେ ରିଲିଫ୍ ବଣ୍ଟନ, ତିବ୍ଦତରୁ ଦଲାଇଲାମାଙ୍କୁ ଗୋପନରେ ଭାରତକୁ ନେଇ ଆସିବାରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି । ସେହିପରି ରୋଗୀମାନଙ୍କର ଜୀବନ ରକ୍ଷା ପାଇଁ ଠିକଣା ସମୟରେ ସେମାନଙ୍କୁ ସୁଦୂରରେ ଥିବା ବିଶେଷଜ୍ଞ ଡାକ୍ତରଙ୍କ ପାଖକୁ ନେଇଯିବାରେ ଏହା କୁଣ୍ଠା-ବୋଧ କରିନାହିଁ । ଏହି ପ୍ରସଙ୍ଗରେ ଗୁରୁତର ଅସୁସ୍ଥ ହୋଇଥିବା ନେପାଳ ରାଜା ବୀରେନ୍ଦ୍ର, ବିଶିଷ୍ଟ ଜନନେତା ଜୟପ୍ରକାଶ ନାରାୟଣ ଏବଂ ଜେ. ବି. କ୍ରିପାଲିନୀ ପ୍ରମୁଖଙ୍କୁ ଯଥା ସମୟରେ ଡାକ୍ତରଖାନାକୁ ନିରାପଦରେ ପରିବହନ କରି ଏହା ଦେଶ ସେବାର ଜ୍ୱଳନ୍ତ ଉଦାହରଣ ପ୍ରଦର୍ଶନ କରିଛି । ଅବଶ୍ୟ ଏହି ବିରାଟ ସଫଳତା ସମ୍ଭବପର ହୋଇ ପାରିଛି କେବଳ ଏହି ସ୍କ୍ୱାର୍ଡ୍ରନରେ ଥିବା ସର୍ବୋଚ୍ଚ ଯୋଗ୍ୟତା ସଂପନ୍ନ ସାହସୀ ଓ କର୍ମନିଷ୍ଠ ପାଇଲଟ୍‌ମାନଙ୍କ ଅହରହ ଉଦ୍ୟମଯୋଗୁ । ସେଥିପାଇଁ ଆଜି କେବଳ ଏହି ସ୍କ୍ୱାର୍ଡ୍ରନ ସମଗ୍ର ଦେଶବାସୀଙ୍କର ଶ୍ରଦ୍ଧା ଓ ସମ୍ମାନଭାଜନ ହୋଇନାହିଁ, ବରଂ ଅନ୍ୟ କଥାରେ କହିବାକୁ ଗଲେ ଆନ୍ତର୍ଜାତୀୟ କ୍ଷେତ୍ରରେ ମଧ୍ୟ ଏହା ସମସ୍ତଙ୍କର ଦୃଷ୍ଟିଆକର୍ଷଣ କରିଛି । ଗତ ଡ଼ିସେମ୍ବର ମାସ ୧୧ ତାରିଖ ଦିନ ଭାରତର ରାଷ୍ଟ୍ରପତି ତଥା ପ୍ରତିରକ୍ଷା ବାହିନୀର ସର୍ବୋଚ୍ଚ କର୍ତ୍ତା ଜ୍ଞାନୀ ଜୈଲ ସିଂହଙ୍କ ସମ୍ମାନସୂଚକ "ସ୍କ୍ୱାର୍ଡ୍ରନ ଷ୍ଟାଣ୍ଡାର୍ଡ" ଗ୍ରହଣ କରି ଏହା ନିଜର ଲକ୍ଷ୍ୟ "ସେବା ଓ ସୁରକ୍ଷା" ଆଦର୍ଶକୁ ଅଧିକ ମହୀୟାନ୍ କରିବ ବୋଲି ଆଶା କରାଯାଏ ।



ଗ୍ରାମପଞ୍ଚାୟତଗୁଡ଼ିକୁ ପୁରସ୍କାର ପ୍ରଦାନ ଉତ୍ସବରେ ରାଜ୍ୟପାଳ ଶ୍ରୀପାଣ୍ଡେ

# ଅଗ୍ନି ଦୁର୍ଘଟଣା ଓ ଏହାର ନିସ୍କରଣ

ଶ୍ରୀ ଦେବ ଆନନ୍ଦ ନାଏକ

ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର ମତ ଯେ, ଲୋକମାନେ ବହୁ ଦିନରୁ ନିଆଁକୁ ଜାଣିଛନ୍ତି । ସମ୍ଭବତଃ ବଣୁଆ ଲୋକମାନେ ବଣ ଜଙ୍ଗଲରେ ବୁଲୁ ବୁଲୁ ପ୍ରଥମେ ନିଆଁର ସନ୍ଧାନ ପାଇଲେ । ହୁଏତ ଜଙ୍ଗଲରେ ବଜ୍ରପାତ କିମ୍ବା ଆଗ୍ନେୟଗିରିରୁ ନିଆଁର ଉତ୍ପତ୍ତି ହୋଇଛି । ନିଆଁକୁ ପ୍ରଥମେ ସେ ଶତ୍ରୁରୂପେ ଦେଖୁଥିଲେ । କିନ୍ତୁ କାଳକ୍ରମେ ଏହି ଉପାଦେୟ ବସ୍ତୁର ବ୍ୟବହାର ସେ ଜାଣିପାରିଲେ ।

ପ୍ରାଚୀନକାଳର ଗ୍ରୀକମାନଙ୍କର ବିଶ୍ୱାସ ଥିଲାଯେ, ବାୟୁ, ପୃଥିବୀ ପାଣି ଏବଂ ଅଗ୍ନି —ଏହି ଚାରୋଟି ମୌଳିକ ଉପାଦାନ ( element ) ବିଶ୍ୱ ବ୍ରହ୍ମାଣ୍ଡକୁ ( Univarse ) ଗଠନ କରିଛନ୍ତି ଏବଂ ଜଣେ ଲେଖାଏଁ ଭଗବାନ ପ୍ରତ୍ୟେକ ଉପାଦାନର ତତ୍ତ୍ୱାବଧାରକ ଥିଲେ । ଯେତେବେଳେ ଅଗ୍ନି ଦେବତା କୌଣସି ବସ୍ତୁକୁ ରାଗରେ ଧ୍ୱଂସ କରିବାକୁ ଚାହୁଁଥିଲେ ସେତେବେଳେ ଅଗ୍ନିକାଣ୍ଡ ସଙ୍ଗଠିତ ହେଉଥିଲା । ନିଆଁକୁ ଲିଭାଇବା ପାଇଁ କେହି ଜଣେ ଜଳଦେବତାଙ୍କୁ ପ୍ରାର୍ଥନା କରୁଥିଲେ । ଯଦି ଜଳ ଦେବତାଙ୍କ ମନର ଅବସ୍ଥା ଭଲ ଥାଏ, ତେବେ ସେ ବର୍ଷାକୁ ପଠାଇ ନିଆଁକୁ ଲିଭାଇ ଦେଉଥିଲେ । ବର୍ତ୍ତମାନ ଆଉ ସେ ଅନ୍ଧଯୁଗ ନାହିଁ, କି ନିଆଁ ଲିଭାଇବା ପାଇଁ ଜଳ ଦେବତାଙ୍କୁ ଆରାଧନା କରିବାକୁ ପଡୁନି । ଗବେଷଣା କରି ଆମେ ନିଆଁର ପ୍ରକୃତ ତଥ୍ୟ ତଥା ଏହାର ବ୍ୟବହାର ଭଲ ରୂପେ ଜାଣି ପାରୁଛୁ ।

ବର୍ତ୍ତମାନ ଏହି ବିଜ୍ଞାନ ଯୁଗରେ ନିଆଁ କ'ଣ ଏ ବିଷୟ କାହାକୁ କହିବାର ଆବଶ୍ୟକତା ନାହିଁ । ନିଆଁ ମାନବ ସମାଜର ଉପକାରୀ ବନ୍ଧୁ କିନ୍ତୁ ମାରାତ୍ମକ ଶତ୍ରୁ । ଅର୍ଥାତ୍ ନିଆଁକୁ ନିୟନ୍ତ୍ରଣ କରି ଜାଣିଲେ ଏହା ଆମର ଉପକାରୀ ବନ୍ଧୁ ରୂପେ କାର୍ଯ୍ୟ କରେ । ନିଆଁ ନ ଥିଲେ, ବର୍ତ୍ତମାନ ଯୁଗର ଯାନ୍ତ୍ରିକ ସଭ୍ୟତା ଅଗ୍ରଗତି ପଥରେ ଅଗ୍ରସର ହୋଇ ପାରି ନଥାନ୍ତା । କିନ୍ତୁ ଅନ୍ୟ ପକ୍ଷରେ ଅଣ-ଆୟତ୍ତ ନିଆଁ ମାନବ ସମାଜର ମାରାତ୍ମକ ଶତ୍ରୁ । ନିଆଁର ଦୌରାତ୍ମ୍ୟ ଯୋଗୁଁ ମନୁଷ୍ୟର ଧନ ଜୀବନ ଜଳିପୋଡି ଭସ୍ମୀଭୂତ ହୋଇ ଯାଉଛି ।

ଦହନ ( Combu ) ଅର୍ଥାତ୍ ନିଆଁ ଅନ୍ୟ କିଛି ନୁହେଁ, ଏହା ହେଉଛି ଏକ ରାସାୟନିକ ପ୍ରତିକ୍ରିୟା ( Chemical reaction ) ଯେଉଁଥିରୁ ଉତ୍ତାପ ଆଲୋକ ଏବଂ ଧୂଆଁର ଉତ୍ପତ୍ତି । ଧୂଆଁ ଅନ୍ୟ କିଛି ନୁହେଁ ଅଦାହ୍ୟ ସୂକ୍ଷ୍ମାତିସୂକ୍ଷ୍ମ ଅଙ୍ଗାର କଣିକାର ସମଷ୍ଟି ଦହନୀୟ ବସ୍ତୁ ( Combustible material ) ଅମ୍ଳଜାନ ( Oxygen ) ଓ ଉତ୍ତାପ (Tgnition Temperature) ଏହି ତିନୋଟି ଉପାଦାନ ଏକାଠି ହେଲେ ଅଗ୍ନିର ସୃଷ୍ଟି ହୋଇଥାଏ । ଯଦି ତନ୍ମଧ୍ୟରୁ ଯେ କୌଣସି ଗୋଟିଏ ଉପାଦାନ କାଢି ନିଆଯାଏ ତା ହେଲେ ନିଆଁ ଆଉ ଜଳିବ ନାହିଁ ବରଂ ଲିଭିଯିବ ।

ନ୍ୟାସନାଲ ଫାୟାର ପ୍ରୋଟେକସନ ଆସୋସିଏସନ ( N. F. P. A. ) ବସ୍ଟନ ଦ୍ୱାରା ନିଆଁ ଲାଗିବାର କାରଣ ଗୁଡିକର ଏକ ତାଲିକା ପ୍ରସ୍ତୁତ କରାଯାଇଛି ।

ପ୍ରଥମ କାରଣ –(କ) ଗରମ କରିବା ଏବଂ ରାନ୍ଧିବା ଉପକରଣ (Heating and Cooking equipments) ଦ୍ୱାରା ସର୍ବାଧିକ ଅଗ୍ନି ଦୁର୍ଘଟଣା ସଂଘଟିତ ହେବା ସଙ୍ଗେ ସଙ୍ଗେ ପ୍ରଭୂତ କ୍ଷତି ମଧ୍ୟ ହୋଇଥାଏ ।

(ଖ) ତ୍ରୁଟିପୂର୍ଣ୍ଣ କିମ୍ବା ଅତ୍ୟଧିକ ଗରମ ଚିମ୍ନି ଅତ୍ୟଧିକ ଗରମ ତେଲ ଏବଂ ଗ୍ୟାସ ଚାଳିତ ଉପକରଣ ( Gas fired equipment ) ତ୍ରୁଟିପୂର୍ଣ୍ଣ କିମ୍ବା ଅତ୍ୟଧିକ ଗରମ ଚିମ୍ନି (defective or over heated Chemineys and flues) ଗରମ ପାଉଁଶ ଓ କୋଇଲା ଏବଂ ଦହନୀୟ ବସ୍ତୁ ହିଟର ପାଖରେ ରଖିଲେ ।

ଦ୍ୱିତୀୟ କାରଣ – ଧୂମପାନ ଏବଂ ଦିଆସିଲି, ଦରପୋଡ଼ା ସିଗାରେଟ, ବିଡି ଓ ଜଳନ୍ତା ଦିଆସିଲି କାଠି ଏଣେ ତେଣେ ଫୋପାଡ଼ିବା ଦ୍ୱାରା ବାରମ୍ବାର ଅଗ୍ନି ଦୁର୍ଘଟଣା ଘଟିଥାଏ ।

ତୃତୀୟ କାରଣ – ଇଲେକ୍‌ଟ୍ରିକାଲ ଉପକରଣ (Electricai Equipments.)

ଚତୁର୍ଥ କାରଣ – (କ) ଅଳିଆଗଦା, ଅକାରଣରେ ଜଳି ଉଠିବା କିନଷର ଗୁଣ୍ଡ ଜମାକରି ରଖିଲେ ନିଆଁ ଲାଗିଲେ ସେଥିରୁ ବିସ୍ଫୋରଣ ଘଟିପାରେ ଘର ଭିତରେ ଅଳିଆ ଜମାକରି ରଖିଲେ ଅସାବଧାନତା ବଶତଃ ତା ଉପରେ ଜଳନ୍ତା ସିଗାରେଟ ପକାଇ ଦେଲେ ନିଆଁ ଲାଗିପାରେ ।

(ଖ) ଖୋଲା ଜଳନ୍ତା ବତୀ ( Open flame ) ଖୋଲା ଭାବରେ ଜଳନ୍ତା ବତୀ ସଳିତା ଆଦି ମୂଷାମାନଙ୍କ ଦ୍ୱାରା ଅପହରଣ ହୋଇ ଅଗ୍ନି ଦୁର୍ଘଟଣା ଘଟିପାରେ ।

ପଞ୍ଚମ କାରଣ – (କ) ଘର ଛାତ ଉପରେ ଅଗ୍ନି କଣିକା (Spark on roof),

(ଖ) ଓ୍ୱେଲଡିଙ୍ଗ ଏବଂ କଟିଙ୍ଗ (Welding and Cutting activiteis)

(ଗ) ଉପରେ ଥିବା ଯନ୍ତ୍ରପାତିରୁ ଅଗ୍ନି କଣିକା ପଡିବାରୁ (Spark from Overhead Machineery)

(ଘ) ନାନା ପ୍ରକାରର ଖୋଲା ଶିଖା ଏବଂ ଅଗ୍ନିକଣିକା (Miscellaneous Open flames and sparks)
ଯଥା :– ଚୁଲୀ ଏବଂ ଇଞ୍ଜିନ୍‌ରୁ ବାହାରୁଥିବା ଅଗ୍ନିକଣିକା ।

ଷଷ୍ଠ କାରଣ – (କ) ଉପକରଣଗୁଡ଼ିକରେ ତ୍ରୁଟି (Defective in appliances)

(ଖ) ଦହନୀୟ ତରଳ ପଦାର୍ଥର ବ୍ୟବହାର (Using of flammable liquid)

(ଗ) ବଜ୍ରପାତ (Lightning)

(ଘ) ସ୍ୱାଭାବିକ ଦହନ (Spotaneous Combustion) ପାଳଗଦା, ଘାସଗଦା, ଝୋଟ ଆଦି ଯେଉଁଥିରୁ ଆପେ ଆପେ ଉତ୍ତାପ ଜାତ ହୋଇ ବାହ୍ୟିକ ଉତ୍ତାପ ବିନା ସାହାଯ୍ୟରେ ଜଳିଉଠେ ।

(ଙ) ଈର୍ଷା ପ୍ରଣୋଦିତ ହୋଇ କିମ୍ବା ବେଆଇନ୍ ଭାବେ ଅନ୍ୟ ଘରେ ବା ଜିନିଷପତ୍ରରେ ନିଆଁ ଲଗାଇଦେବା (Treendiary or Arson)

(ଚ) ଗ୍ୟାସ ଏବଂ ଗ୍ୟାସ ଉପକରଣ (Gas and gas appliances)

(ଛ) ବିସ୍ଫୋରଣ (Explosions)

(ଜ) ନାନା ପ୍ରକାର କାରଣ (Miscellaneous)

(ଝ) କେତେକ କାରଣ ଏ ପର୍ଯ୍ୟନ୍ତ ଅଜ୍ଞାତ ଅଛି (Unknown or undetermined)

ଅଗ୍ନି ଲାଗିବାର କାରଣଗୁଡ଼ିକୁ ଯଦି ପୁଙ୍ଖାନୁପୁଙ୍ଖ ଭାବରେ ଅନୁଧ୍ୟାନ କରାଯାଏ, ତା ହେଲେ ଜଣାଯାଏ ଯେ କୌଣସି କାରଣରୁ ନିଆଁ ଲାଗୁନା କାହିଁକି –ଶତକଡ଼ା ୯୦ ଭାଗ ଅଗ୍ନିକାଣ୍ଡ ଲୋକମାନଙ୍କର ଅସାବଧାନତା ଯୋଗୁ ହିଁ ଘଟିଥାଏ । ସୁତରାଂ ସାମାନ୍ୟ ସତର୍କତା ଅବଲମ୍ବନ କଲେ ନିଆଁର ପ୍ରାଦୁର୍ଭାବ ଯେ କମିଯିବ–ଏଥିରେ ମତଭେଦର ଅବକାଶ ନାହିଁ । ନିଆଁ ନ ଲାଗିବା ପାଇଁ ଯେଉଁ ସବୁ ସତର୍କତା ତଥା ପଦକ୍ଷେପମାନ ଗ୍ରହଣ କରାଯାଏ ତାକୁହିଁ ଅଗ୍ନି ନିବାରଣ ତଥା ଅଗ୍ନି ନିରାପତ୍ତା କୁହାଯାଏ । ଯେତେଦିନ ପର୍ଯ୍ୟନ୍ତ ଜନ ସାଧାରଣ ଅଗ୍ନି ନିରାପତ୍ତାର ଗୁରୁତ୍ୱକୁ ଭଲ ଭାବରେ ଉପଲବ୍ଧି କରି ପାରି ନାହାନ୍ତି ସେତେଦିନ ପର୍ଯ୍ୟନ୍ତ କୌଣସି ସରକାର ଯେତେ ଚେଷ୍ଟା କଲେ ମଧ୍ୟ ଅଗ୍ନି ନିବାରଣ କ୍ଷେତ୍ରରେ କେବେ ବି ସଫଳ ହୋଇ ପାରିବେ ନାହିଁ କି ଅଗ୍ନିର ପ୍ରାଦୁର୍ଭାବ କମିବନାହିଁ ।

ପ୍ରତିଦିନ ସମ୍ବାଦପତ୍ରମାନଙ୍କରେ ପଢିବାକୁ ମିଳୁଛି ଯେ, ନିଆଁ ଦ୍ୱାରା ସହସ୍ରାଧିକ ଟଙ୍କାର ଧନ ସମ୍ପତ୍ତି ଜଳିପୋଡ଼ି ଭସ୍ମୀଭୂତ ହୋଇଗଲା । ତେଣୁ ଜନସାଧାରଣ ଆର୍ଥିକ ସାହାଯ୍ୟ ତଥା ଦମକଳ କେନ୍ଦ୍ର ପ୍ରତିଷ୍ଠା ପାଇଁ ସରକାରଙ୍କୁ ଦାବୀ କରୁଛନ୍ତି । କିନ୍ତୁ କେବେ ବି ପଢିବାକୁ ମିଳି ନି ଯେ, ଲୋକମାନେ ଅଗ୍ନି ନିବାରଣର ପ୍ରସାର ପାଇଁ ସରକାରଙ୍କଠାରେ ଦାବୀ କରୁଛନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ପ୍ରାୟ ଅଧିକାଂଶ ଲୋକ ଅଗ୍ନି ନିରାପତ୍ତାର ମହତ୍ୱ ତଥା ଉପାଦେୟତା ଉପରେ ଅନଭିଜ୍ଞ । ପୁନଶ୍ଚ କେତେକ ଲୋକ ଭାବନ୍ତି ଯେ, ଅଗ୍ନି ନିବାରଣ କେବଳ ସରକାରଙ୍କର କର୍ତ୍ତବ୍ୟ ଏବଂ ତାଙ୍କର ବିଶ୍ୱାସ ଯେ ଅଗ୍ନି ନିବାରଣ କେବଳ ନାମକୁ ମାତ୍ର– ଏହାଦ୍ୱାରା କ'ଣ ନିଆଁ ଲିଭିବ ? ବରଂ ସରକାରଙ୍କଠାରେ ଦାବୀ କରି ଦମକଳ ପ୍ରତିଷ୍ଠା କଲେ ଅଗ୍ନିଭୟ ଆଉ ରହିବ ନାହିଁ । କିନ୍ତୁ ସେମାନଙ୍କର ଏପରି ଧାରଣା ପୁରାପୁରି ଭୁଲ । କାରଣ କେବଳ ଦମକଳ ପ୍ରତିଷ୍ଠା କରିଦେଲେ ଅଗ୍ନିକାଣ୍ଡ ଯେ ତା ମନକୁ କମିଯିବ ତାହାନୁହେଁ ବରଂ ଅଗ୍ନି ନିବାରଣ ହେଲେ ଅଗ୍ନିକାଣ୍ଡ ଆପେ ଆପେ କମିଯିବ । ଦମକଳ ପ୍ରତିଷ୍ଠା କରିବା ପାଇଁ ସରକାରଙ୍କୁ ଖୁବ ଖର୍ଚ୍ଚାନ୍ତ ହେବାକୁ ପଡିଥାଏ । ତେଣୁ ଜନସାଧାରଣଙ୍କର ବାରମ୍ବାର ଦାବୀ ସତ୍ତ୍ୱେ ସେ ଦମକଳ ପ୍ରତିଷ୍ଠା କରିବା ପାଇଁ ଅସମର୍ଥ । ଏପରି କ୍ଷେତ୍ରରେ କୁହା ଯାଇ ପାରେ ଜନସାଧାରଣ ଦମକଳ ପ୍ରତିଷ୍ଠା କରିବା ପାଇଁ ଯେତିକି ଆଗ୍ରହୀ, ଯଦି ତାର କିୟଦାଂଶ ଅଗ୍ନି ନିବାରଣ ପାଇଁ ଉଦ୍ୟୋଗୀ ହୁଅନ୍ତି ତା' ହେଲେ ଅତ୍ୟନ୍ତ ଭଲ ହୁଅନ୍ତା । ଅଗ୍ନି ନିବାରଣ ବ୍ୟୟ ସାପେକ୍ଷ ନୁହେଁ କିମ୍ବା ଏଥିପାଇଁ ସରକାରଙ୍କ ଉପରେ ନିର୍ଭର କରିବାକୁ ପଡ଼େ ନାହିଁ । ତେଣୁ ସରକାର

ବିଭିନ୍ନ ପ୍ରକାର ପଦକ୍ଷେପମାନ ଗ୍ରହଣ କରି ଜନସାଧାରଣଙ୍କ ମନରେ ଅଗ୍ନି ନିବାରଣ ତଥା ନିରାପତ୍ତା ମନୋଭାବ ଜାଗ୍ରତ କରିବା ଉଚିତ ।

କୌଣସି ଦେଶ ତଥା ରାଜ୍ୟରେ ଅଗ୍ନି ନିବାରଣର ସଫଳତା ସାଧାରଣତଃ ନିମ୍ନଲିଖିତ ବିଷୟଗୁଡ଼ିକ ଉପରେ ନିର୍ଭର କରିଥାଏ :—

(୧) ସର୍ବପ୍ରଥମେ ଜନସାଧାରଣ ଯେପରି ଅଗ୍ନି ନିବାରଣ ପ୍ରତି ଆଗ୍ରହାନ୍ୱିତ ହେବେ ସେଥିପ୍ରତି ବିଶେଷ ଲକ୍ଷ୍ୟ ରଖି ସରକାର ବିଭିନ୍ନ ପ୍ରକାର ବ୍ୟବସ୍ଥାମାନ ଗ୍ରହଣ କରିବା ଉଚିତ ।

(୨) ଯେଉଁସବୁ ବେସରକାରୀ ସଂସ୍ଥାମାନ ଅଗ୍ନି ନିବାରଣ ଯୋଜନାର ସଫଳତା ତଥା ବହୁଳ ପ୍ରସାର ପାଇଁ ବିଭିନ୍ନ ପ୍ରକାର ପଦକ୍ଷେପମାନ ନେଉଛନ୍ତି, ସେମାନଙ୍କୁ ଆର୍ଥିକ ସାହାଯ୍ୟ ଦେବାର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଏ ଦିଗରେ ସେମାନଙ୍କୁ ବିଶେଷ ଭାବରେ ଉତ୍ସାହିତ କରିବା ଉଚିତ ।

(୩) ଯେଉଁସବୁ ସହର କିମ୍ବା ଗ୍ରାମାଞ୍ଚଳରେ ଅଗ୍ନି ଦୁର୍ଘଟଣା ସର୍ବାପେକ୍ଷା କମ୍ ହୋଇଥିବ କିମ୍ବା ମୋଟେ ହୋଇ ନଥିବ ସେଇ ସ୍ଥାନଗୁଡ଼ିକୁ ଆଦର୍ଶ ଅଗ୍ନି ନିରାପତ୍ତା ସହର/ଗ୍ରାମ ବୋଲି ଘୋଷଣା ( Ideal fire Protected Town ) କରିବା ସଙ୍ଗେ ସଙ୍ଗେ ଅଗ୍ନି ନିରାପତ୍ତା ପୁରସ୍କାର ଦେବାର ବ୍ୟବସ୍ଥା କରିବା ଉଚିତ । ଫଳତଃ ଜନସାଧାରଣ ଦିନକୁ ଦିନ ଅଗ୍ନି ନିବାରଣ ପ୍ରତି ବିଶେଷ ଭାବରେ ଆଗ୍ରହାନ୍ୱିତ ହେବେ ।

(୪) ସ୍କୁଲ ତଥା କଲେଜମାନଙ୍କରେ ପ୍ରବେଶିକା ଅଗ୍ନି ବିଜ୍ଞାନର (Elementary Fire Science) ବାଧ୍ୟତା ମୂଳକ ଶିକ୍ଷାଦାନ ବ୍ୟବସ୍ଥା କରିବା ଉଚିତ । ଫଳତଃ ଛାତ୍ରାବସ୍ଥାରୁହିଁ ଲୋକମାନେ ଅଗ୍ନି ସମ୍ବନ୍ଧରେ ଅଭିଜ୍ଞ ହୋଇ ପାରିବା ସଙ୍ଗେ ସଙ୍ଗେ ଅଗ୍ନି ନିବାରଣ ସଫଳ ହୋଇ ପାରିବ ।

(୫) ଦମକଳ ପ୍ରତିଷ୍ଠା କରିବା ଦିଗରେ ସରକାରଙ୍କୁ ଯେତିକି ଖର୍ଚ୍ଚାନ୍ତ ହେବାକୁ ପଡୁଛି ତାହାର କିୟଦାଂଶ ଅଗ୍ନି ନିବାରଣ ଦିଗରେ ଖର୍ଚ୍ଚ କରିବା ଅତ୍ୟନ୍ତ ଭଲ । କାରଣ ଅଗ୍ନି ନିବାରଣ ଯେଉଁଠି ଅଗ୍ନି ଭୟ ନାହିଁ ସେଇଠି (Fire Prevention is better than fire extinction) ।

(୬) ଅଗ୍ନି ନିବାରଣର ସଫଳତା ତଥା ଦ୍ରୁତ ପ୍ରସାର ପାଇଁ ରାଜ୍ୟ ସ୍ତରରେ ଗୋଟିଏ ଅଗ୍ନି ନିରାପତ୍ତା ଉପଦେଷ୍ଟା କମିଟି ( Fire Protection Advisory Committee ) ଗଠନ କରିବା ଉଚିତ ।

(୭) ଅଗ୍ନି ନିବାରଣ ସ୍ଲୋଗାନ ସବୁ ବିନା ମୂଲ୍ୟରେ ଜନସାଧାରଣଙ୍କୁ ବିତରଣ କରିବା ସୁବ୍ୟବସ୍ଥା ରହିବା ଉଚିତ । ଦ୍ୱିତୀୟତଃ ଅଗ୍ନି ନିବାରଣ ସ୍ଲୋଗାନ ପ୍ରତିଯୋଗିତା ତଥା ପୁରସ୍କାରର ବ୍ୟବସ୍ଥା କଲେ ଲୋକମାନେ ଆହୁରି ଆଗ୍ରହାନ୍ୱିତ ହେବେ ।

ଲୋକମାନେ ନିଆଁ ବିଷୟରେ ଯେତେବେଶୀ ଅଭିଜ୍ଞ ହେବେ ନିଆଁ ଦ୍ୱାରା ସେତିକି କ୍ଷତ କମିଯିବ । ଅଗ୍ନି ନିରାପତ୍ତା ଆୟତ୍ତ କରିବା ପାଇଁ ସମସ୍ତେ ସବୁବେଳେ ମନେ ରଖିବା ଉଚିତ । ଅଗ୍ନି ନିବାରଣ ଯେଉଁଠି, ଅଗ୍ନି ଭୟ ନାହିଁ ସେଇଠି । କି ସହରବାସୀ ବା କି ଗ୍ରାମବାସୀ ସମସ୍ତେ ଜାଣିବା ଉଚିତ ଯେ, ଅଗ୍ନି ନିବାରଣ ପ୍ରତ୍ୟେକଙ୍କ କର୍ତ୍ତବ୍ୟ । ଏହା କେବଳ ସରକାର କିମ୍ବା ଜଣେ ଦୁଇଜଣ ଲୋକଙ୍କ ଦ୍ୱାରା ସମ୍ଭବପର ନୁହେଁ କି ଏପରି ଭାବିବା ମଧ୍ୟ ବିଜ୍ଞତାର ପରିଚୟ ନୁହେ । ଜଣେ ଲୋକର ଅସାବଧାନତା ଫଳରେ ସାରା ସହର ବା ଗ୍ରାମ ଜଳିପୋଡ଼ି ପାଉଁଶଗଦା ହେବ ଓ ଲୋକେ ନାନା ପ୍ରକାର ଦୁଃଖ ତଥା ଯନ୍ତ୍ରଣାର ସମ୍ମୁଖୀନ ହେବେ । ସେଥିପାଇଁ କୁହାଯାଇଛି "ଘୋଡ଼ା ଚଢ଼ାଠାରୁ ସମ୍ପତ୍ତି ନାହିଁ କି ଘରପୋଡ଼ିଠାରୁ ବିପତ୍ତି ନାହିଁ । ପ୍ରତ୍ୟେକ ବୟସ୍କ ଲୋକ ପକ୍ଷରେ ଜାଣି ରଖିବା ଉଚିତ ଯେ ଶିଶୁ ଓ ଅଜ୍ଞ ଲୋକଙ୍କ ଦ୍ୱାରାହିଁ ସାଧାରଣତଃ ଅଗ୍ନିକାଣ୍ଡ ଘଟିଥାଏ । ଥରେ ନିଆଁ ଅଣାୟତ୍ତ ଅବସ୍ଥାକୁ ( Conflagrations ) ଆସିଲେ ତାକୁ ପୁଣି ଆୟତ୍ତ କରିବାକୁ ହେଲେ ନାନା ପ୍ରକାର ଆଧୁନିକ ଧରଣର ଯନ୍ତ୍ରପାତି ଦରକାର । ଯାହାକି ଆମ ଦେଶର ଲୋକମାନଙ୍କ ପାଖରେ ନାହିଁ କି ସରକାର ଶତଚେଷ୍ଟା କଲେ ମଧ୍ୟ ସମସ୍ତଙ୍କୁ ଯୋଗାଇ ପାରିବେ ନାହିଁ । ତେଣୁ ନିଆଁ ଯେପରି ଆୟତ୍ତ ବାହାରକୁ ନ ଯାଏ, ତାହା ଦେଖିବା ସମସ୍ତଙ୍କର ପ୍ରଥମ ତଥା ଏକାନ୍ତ କର୍ତ୍ତବ୍ୟ ।

ନିର୍ଦ୍ଦେଶକ, ଉତ୍କଳ ଅଗ୍ନି ପ୍ରଶିକ୍ଷଣ ପ୍ରତିଷ୍ଠାନ,
କାଳୁଗାଁ, ରାଉରକେଲା ।



# ସମାଜ-ସୁଶିକ୍ଷା-ସାଧନା

ଯୋଗାଚାର୍ଯ୍ୟ ପଣ୍ଡିତ ରମାକାନ୍ତ କର

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ଶରୀର ସହିତ ଅଙ୍ଗଗୁଡ଼ିକ ଯେପରି ଓତଃପ୍ରୋତ ଭାବେ ଜଡ଼ିତ, ସେହିପରି ସମାଜ ସହିତ ମାନବର ମଧ୍ୟ ଘନିଷ୍ଠ ସଂପର୍କ ରହିଛି । ଶରୀର ଉପରେ ଯେପରି ଅଙ୍ଗଗୁଡ଼ିକର ପ୍ରଭାବ, ସେହିପରି ଅଙ୍ଗଗୁଡ଼ିକ ଉପରେ ଶରୀରର ପ୍ରଭାବ ରହିଛି । ଠିକ୍ ସେହିପରି ସମାଜ ଉପରେ ମାନବର ପ୍ରଭାବ ତଥା ମାନବ ଉପରେ ସମାଜର ପ୍ରଭାବ ରହିଛି । ଏଣୁ ମାନବ ଓ ସମାଜ ଉଭୟ ପରସ୍ପର ଉପରେ ନିର୍ଭରଶୀଳ । ମାନବ ଯେପରି ସମାଜରୁ ସୁବିଧା ଓ ସୁଯୋଗ ଲାଭ କରିବାକୁ ହକ୍‌ଦାର, ସେହିପରି ସମାଜ ପ୍ରତି ମାନବର କର୍ତ୍ତବ୍ୟ ଓ ଦାୟିତ୍ୱ ମଧ୍ୟ ରହିଛି । ଏଣୁ ସମାଜ ସହିତ ମାନବ ତଥା ନାଗରିକର ସମ୍ବନ୍ଧ ଭୌତିକ, ପରାଭୌତିକ ତଥା ନୈତିକ । ସମାଜର ଦାୟିତ୍ୱ ସଂପନ୍ନ ପାଇଁ ପ୍ରତ୍ୟେକ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସଦ୍‌ଭାବ, ସଦାଚାର, ନୈତିକ ବ୍ୟବହାରର ଆବଶ୍ୟକତା ରହିଛି । ଏ ଗୁଡ଼ିକ ସବୁ ସୁଶିକ୍ଷାର ପ୍ରଭାବରୁ ଜାତ ହୋଇଥାଏ ।

ବ୍ୟବହାର ଯଦି ସୁଖକର, ନୀତିପୂର୍ଣ୍ଣ, ସାମାନ୍ୟ ସମାଜ ସ୍ୱୀକୃତ ନିୟମ ତଥା ଶୃଙ୍ଖଳାର ଅନୁକୂଳ ହୁଏ, ତେବେ ଏହାକୁ ହିଁ ସଦ୍‌ବ୍ୟବହାର ବା ନୈତିକ ବ୍ୟବହାର ବୋଲି କୁହାଯାଇ ପାରେ । ବ୍ୟବହାର କେବଳ ବ୍ୟବହାରର କର୍ତ୍ତାପାଇଁ ସୁଖକର ନ ହୋଇ ଯଦି କର୍ତ୍ତା ସହିତ ସମ୍ବନ୍ଧିତ ସମସ୍ତ ବ୍ୟକ୍ତିଙ୍କର ପ୍ରସନ୍ନତାର କାରଣ ହେଲା, ତେବେ ସେହି ବ୍ୟବହାର ହିଁ ସୁଖକର ବୋଲି କୁହାଯାଇ ପାରେ । କର୍ତ୍ତାକୁ ନିଜର କର୍ତ୍ତୃତ୍ୱର ଉଚିତ୍ ବୋଧ ହେବା ହିଁ ନୀତିପୂର୍ଣ୍ଣ କାର୍ଯ୍ୟ ବୋଲି କୁହାଯାଏ ।

ସମାଜ ପାଇଁ ସଜ୍ଜନର ବ୍ୟବହାର ହିଁ ସଦ୍‌ବ୍ୟବହାର । ସମାଜର ଉନ୍ନତି ପାଇଁ ସୁଶିକ୍ଷା ହିଁ ଏକାନ୍ତ ଆବଶ୍ୟକ । ସତ୍‌ବ୍ୟବହାରର, ପୂତଚରିତ୍ର, ସତ୍‌ସାଧନା ଇତ୍ୟାଦି ଉପାଦାନକୁ ନେଇ ସୁଶିକ୍ଷା ଏକ ସମୁଚ୍ଚୟ। ସୁଶିକ୍ଷାର ଅଭାବରେ ସତ୍‌ବ୍ୟବହାର, ପୂତଚରିତ୍ର, ସତ୍ ସାଧନା ଆଡ଼କୁ ମନର ଆକର୍ଷଣ ହୋଇ ନ ପାରେ । ବ୍ୟକ୍ତି ବିଶେଷର ବଂଶଗୁଣ, ପାରମ୍ପରିକ ସଂସ୍କୃତି ଯାହା ଥାଉନା କାହିଁକି, ସେ ଯଦି ବାତାବରଣ ମାଧ୍ୟମରେ ଜୀବନକୁ ଗଠନ କରେ, ତେବେ ବଂଶ ଗୁଣକୁ ଅତିକ୍ରମ କରି ଉନ୍ନତି କିମ୍ବା ଅବନତ ହୋଇ ପାରେ । ବାଟ୍‌ସନ୍ ମଧ୍ୟ ବଂଶାନୁଗୁଣଠାରୁ ବାତାବରଣର ଗୁରୁତ୍ୱ ଆରୋପ କରିଛନ୍ତି— "Give me a child and I shall train him to become any type of specialist, I might select a doctor, a lawyer....and even a beggar man or a thief regardless of his talents, Penchants and tendencies. Vocation and race of his ancestors."

ଏଣୁ ଏହି ମତାନୁଯାୟୀ ଶିକ୍ଷାବିତ୍, ଅଭିଭାବକବୃନ୍ଦ ତଥା ସମାଜ ଏହିପରି ସୁସ୍ଥବାତାବରଣ (healthy environment) ସୃଷ୍ଟି କରିବା ଦରକାର, ଯେପରିକି ସତ୍‌ଶିକ୍ଷା ବା ସୁଶିକ୍ଷାର ପ୍ରୋତ୍ସାହନ ମିଳିପାରିବ ।

ଡକ୍‌ଟର କୁର୍ଟ ଲେବିନ୍(Kurt Lewin) ମଧ୍ୟ କହିଛନ୍ତି ଯେ ବ୍ୟକ୍ତି ପ୍ରକୃତିତଃ ସୁଖବାଦୀ, ସେ ସହଜ ଓ ସୁଖଦାୟୀ କାର୍ଯ୍ୟ ପ୍ରତି ସାଧାରଣତଃ ଆକୃଷ୍ଟ ତଥା ଦୁଃଖଦାୟୀ କାର୍ଯ୍ୟ ପ୍ରତି ବିକୃଷ୍ଟ ହୋଇଥାଏ । ଏହି ଦୁଇକାର୍ଯ୍ୟ ମଧ୍ୟରୁ ଉତ୍କୃଷ୍ଟ କାର୍ଯ୍ୟକୁ ଗ୍ରହଣ କରିବାରେ ପ୍ରବୃତ୍ତ କରାଇବା ପାଇଁ ସଦାଚାରଣର ଦୀକ୍ଷା ଏକାନ୍ତ ପ୍ରୟୋଜନ ଓ ଏହି ଦୀକ୍ଷା ଗଣତାନ୍ତ୍ରିକ ଶିକ୍ଷା ପଦ୍ଧତି ଦ୍ୱାରା ହିଁ ସମ୍ଭବ । ଉଚିତ୍ ଅନୁଚିତ୍ କାର୍ଯ୍ୟକୁ ବୁଝି ବିଗ୍ରହି କରିବାରେ ବୁଦ୍ଧିମାନ ବ୍ୟକ୍ତି ମଧ୍ୟ ସବୁସ୍ଥଳରେ ସମର୍ଥ ନୁହେଁ, ଏଣୁ ଏହି ପରିସ୍ଥିତିରେ ଚପଳମତି ବାଳକ-ବାଳିକାଙ୍କୁ କର୍ତ୍ତବ୍ୟାକର୍ତ୍ତବ୍ୟ ବୋଧ କରାଇବା ଗୁରୁଜନ ବୃନ୍ଦ ତଥା ସମାଜ ପକ୍ଷରେ ନିତାନ୍ତ ସଂବେଦନଶୀଳ ତଥା ଗୁରୁତର ବ୍ୟାପାର ଅଟେ ।

"ଜନ୍ ଡୀବେ" (John Dewey) ସୁଶିକ୍ଷା ଓ ସଦାଚାରର ପ୍ରଥମ ସୋପାନ ସମ୍ବନ୍ଧୀୟ ଶିକ୍ଷା ପ୍ରଦାନ କରି ମତବ୍ୟକ୍ତ କରିଛନ୍ତି ଯେ, ବାଳକ କେବଳ ଆବଶ୍ୟକ ଓ ଉପଯୋଗୀ କଥାକୁ ନିଜେ ନିଜର ଅନୁଭବ ମାଧ୍ୟମରେ ଶିକ୍ଷା କରିଥାଏ । ତାହା ଶିକ୍ଷା ଦେବାପାଇଁ ମଧ୍ୟ ସେ ଆହୁରି ଗୋଟିଏ କଥା କହିଛନ୍ତି— ପ୍ରୋଜେକ୍ଟ ପ୍ରଣାଳୀ (Project method) ମାଧ୍ୟମରେ ଜନତାନ୍ତ୍ରିକ ଏବଂ ପରସ୍ପର ସହଯୋଗର ଭାବନା ବିକସିତହୋଇ ପାରେ । ଏହି ଧାରା ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି ।

ସୁଶିକ୍ଷା ବା ସତ୍‌ଶିକ୍ଷା ମଧ୍ୟରେ ଆଦର୍ଶବାଦ (Idealism) ଲୁପ୍ତ ଭାବରେ ଥାଏ । ଏହି ଶିକ୍ଷା ମାଧ୍ୟମରେ ପ୍ରତ୍ୟୟବାଦ ବା ଆଦର୍ଶବାଦର ଜଣେ ମୁଖ୍ୟ ପ୍ରବର୍ତ୍ତକ ହେଉଛନ୍ତି ପ୍ଲେଟୋ" ।

ତାଙ୍କ ମତାନୁଯାୟୀ ସମସ୍ତ ମାନବ ଅଜ୍ଞାନ ଅନ୍ଧକାରମୟ ଗୁମ୍ଫା ମଧ୍ୟରେ ଆବଦ୍ଧ ହୋଇଥାଏ । ଯଦି କେତେବେଳେ ଜ୍ଞାନର ପ୍ରକାଶ ଗୁମ୍ଫାର ଦ୍ୱାର ନିକଟରେ କିଛି ଅସ୍ପଷ୍ଟ ଛାୟାକୃତିର ଆଭାସ ଦିଏ, ତଥାପି ସେତେବେଳେ ସେ ଜ୍ଞାନର ପ୍ରକୃତ ସ୍ୱରୂପକୁ ଅନ୍ୱେଷଣ କରି ଜ୍ଞାନକୁ ଗ୍ରହଣ କରିନେବା ପାଇଁ ପ୍ରୟତ୍ନଶୀଳ ହୁଏ । ଯଦି କୌଣସି ଉପାୟରେ ସେ ସେହି ଅନ୍ଧକାରମୟ ଗୁମ୍ଫାରୁ ମୁକ୍ତ ହୋଇଯାଏ, ତେବେ ସେ ସମସ୍ତ ଜ୍ଞାନକୁ ନିଜ କବଳକୁ ଟାଣି ନେଇ ବିଦ୍ୱାନ୍ ହୋଇଯାଏ । ଏହି ଦର୍ଶନ ଅନୁସାରେ ଆମେ କୌଣସି ବସ୍ତୁକୁ ଏହାର ଗୁଣ-ଦୋଷଗୁଡ଼ିକର ଆତ୍ମଗତ ସଂବେଦନ ଅଥବା ବିଶ୍ୱର ଧାରାର ଅନୁରୂପ ମୂଲ୍ୟାଙ୍କନ କରୁ । ମୂଲ୍ୟ (values) ଏବଂ ବିଶ୍ୱର ପ୍ରାଗନୁଭବିକ ଅର୍ଥାତ୍ ପୂର୍ବ ବିଦ୍ୟମାନ (Prior) ତଥା ଶାଶ୍ୱତ (Eternal) ଅଟେ । ସଂସାରର ପ୍ରତ୍ୟେକ ବସ୍ତୁକୁ ଏହିପରି ବିଶ୍ୱର କରାଯାଇ ପାରେ । ପ୍ଲେଟୋଙ୍କର ଦର୍ଶନରୁ ମଧ୍ୟ ପ୍ରତୀୟମାନ ହୁଏ ଯେ, ସଂସାରର ପ୍ରତ୍ୟେକ ବସ୍ତୁ ପୃଥକ ହେଲେ ମଧ୍ୟ ଏକ ପରମମନ Absolute mind)ର ଅଙ୍ଗ ସ୍ୱରୂପ ଅଟେ । ଏହି ଆଦର୍ଶବାଦୀ ଦର୍ଶନ ଚରିତ୍ର ନିର୍ମାଣ କାର୍ଯ୍ୟକୁ ଏହିପରି ସଜ୍ଜନ ଉପରେ ନ୍ୟସ୍ତ କରିଦିଏ, ଯେ କି ଗୁମ୍ଫାଠାରୁ ବାହାରି ଜ୍ଞାନ ଆହାରଣ କରିବାରେ ଅନ୍ୱେଷଣ କରୁଥାଏ ।

ବିଶ୍ୱର ଜଣେ ବିଦ୍ରୋହୀ ପ୍ରକୃତିର ଦାର୍ଶନିକ ହେଉଛନ୍ତି ରୁସୋ (Rousseau) ଯେକି ଶିକ୍ଷାକ୍ଷେତ୍ରରେ ବିପ୍ଳବ ସୃଷ୍ଟିକରି ପ୍ରକୃତିବାଦ (Naturalism)ର ପ୍ରବେଶ କରାଇଥିଲେ । ତାଙ୍କର ଏହି ପ୍ରକୃତିବାଦ ଅନୁସାରେ ଜଗତ୍ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ । ପ୍ରଥମତଃ ପାରମାର୍ଥିକ ଜଗତ୍ (Monumental World) ଯେଉଁଠାରେକି ସର୍ବଶକ୍ତିମାନ ଈଶ୍ୱରଙ୍କର ରାଜ୍ୟବିଦ୍ୟମାନ ଓ ଦ୍ୱିତୀୟତଃ ଦୃଶ୍ୟ ଜଗତ ବା ଘଟନାତ୍ମକ ଜଗତ୍ (Phenomenal world), ଯେଉଁଠାରେ କି ଭୌତିକ ସଂସାର ଅବସ୍ଥାନ କରିଛି । ପ୍ରଥମ ଜଗତରେ "ସତ୍ୟଂ ଶିବଂ ସୁନ୍ଦରମ୍" ନିହିତ ରହିଛି କିନ୍ତୁ ଅନ୍ୟପକ୍ଷରେ ଘଟନାତ୍ମକ ଜଗତ୍ କେବଳ ବିଷୟମଦ ଓ ମାୟା-ପ୍ରପଞ୍ଚରେ ପରିପୂର୍ଣ୍ଣ । ଏହି ଜଗତ୍କୁ ଆସୁଥିବା ସରଳ ବାଳକର ମନ ନିର୍ମଳ ରହିଥାଏ କିନ୍ତୁ ସମାଜର ସଂସର୍ଗ ଏହାକୁ ଭ୍ରଷ୍ଟ କରିଦିଏ । ଯେ କେହି ପ୍ରଥମେ ଈଶ୍ୱରଙ୍କଠାରୁ ଆସେ ସେ ପବିତ୍ର ଥାଏ କିନ୍ତୁ ସମାଜରେ ଏହି ମନୁଷ୍ୟ ହିଁ ସେହି ମନୁଷ୍ୟକୁ ଦୂଷିତ କରିପକାଏ । ରୁସୋଙ୍କର କହିବାର ତାତ୍ପର୍ଯ୍ୟ ଏହି ଯେ ଯଦି ମାନବ ନିଜେ ତା'ର କହିବାଠାରୁ କାମ କରିବା ପୃଥକ୍ ନ କରେ ଓ ବିବେକଶୀଳ ହୁଏ, ତେବେ ସେ କୌଣସି ବାଧାବିଘ୍ନ ନ ମାନି କାହା ଦ୍ୱାରା ଦୂଷିତ ନ ହୋଇ ସତ୍ ଜ୍ଞାନ ପ୍ରାପ୍ତକରି ବିବେକୀ ହୋଇଯାଏ ।

ଉପରୋକ୍ତ ଦର୍ଶନକୁ ଜାଣିଶୁଣି ମଧ୍ୟ ଶିକ୍ଷାବିତ୍‌ମାନେ ବିଶ୍ୱର କରି ଶିକ୍ଷାର ଢାଞ୍ଚା ବଦଳାଇବା ଉଚିତ୍ । କୋମଳ ମତି ବାଳକ-ବାଳିକାମାନଙ୍କୁ ସମାଜରେ ସୁନାଗରିକ ଭାବରେ ଗଢ଼ି ତୋଳିବା ପାଇଁ କେବଳ ଶିକ୍ଷାବିତ୍ ନାହିଁ ପିଲାଙ୍କର ଅଭିଭାବକ , ଗୁରୁଜନବୃନ୍ଦ, ସାମାଜିକ ପରିବେଷ୍ଟନୀ ଓ ଶିକ୍ଷା ପ୍ରଣାଳୀ ଇତ୍ୟାଦି ସମସ୍ତଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହି ସରଳ ବାଳକ-ବାଳିକାମାନେ ଲଘୁମାନବ (Miniature men) ନୁହନ୍ତି । ସେମାନଙ୍କର ବୁଝିବା ଗୁରୁମାନଙ୍କଠାରୁ ବହୁ ଉନ୍ନତ ମସ୍ତିଷ୍କ ଥାଇପାରେ । ଏହାର ଜ୍ୱଳନ୍ତ ପ୍ରମାଣ ଏହି ନିକଟରେ ଅର୍ଥାତ୍ ୧୯୮୩ ମସିହାରେ ନାଗପୁରଠାରେ ଘଟିଥିବା ଘଟଣାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ଏହି ଘଟଣାଟି ଯେପରି ଭାବରେ ଡ଼ିସେମ୍ବର ତା ୧୬, ୧୯୮୩ ମସିହା "ଜାଗ୍ରତ" ସାପ୍ତାହିକ ଓଡ଼ିଆ ପତ୍ରିକାରେ ପ୍ରକାଶ ପାଇଥିଲା, ତାହାର ଅବିକଳ ନକଲ ଏଠାରେ ଦେବା ହିଁ ବାଞ୍ଛନୀୟ ।

"ଆପଣମାନଙ୍କର ମନେଥିବ ଯେ ଭାରତର କୃତ୍ରିମ ଉପଗ୍ରହ ଇନ୍‌ସାଟ୍-୧ ଏ ର (INSAT-1 A) ସୌର ପାନେଲ୍‌ଟି ଅବରୁଦ୍ଧ ହୋଇ ରହିଥିଲା ଏବଂ ଏହାକୁ ଖୋଲିବା ପାଇଁ ବହୁ ଚେଷ୍ଟାକରି ବୈଜ୍ଞାନିକମାନେ ବାରମ୍ବାର ବିଫଳ ହେଉଥିଲେ ଏବଂ ଏହାରି ଉପରେ ଉପଗ୍ରହଟିର କାର୍ଯ୍ୟକାରିତା ନିର୍ଭର କରୁଥିଲା । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଜଣେ ଧର୍ମପଦଙ୍କର ଆବିର୍ଭାବ ହେଲା ଏବଂ ସେ ଏହାର ସମାଧାନର ସୂତ୍ର ଦେଲେ ।

ସେ ହେଉଛନ୍ତି ମିସ୍.ଆର.ଏସ୍.ରୂପା (Miss.R.S. Roopa) ଯେ କି ନାଗପୁର କେନ୍ଦ୍ରୀୟ ବିଦ୍ୟାଳୟର ନବମ ଶ୍ରେଣୀର ଛାତ୍ରୀ। ତାଙ୍କର ସୂତ୍ର ହେଲା—

ସୂର୍ଯ୍ୟକିରଣ ଯୋଗୁଁ ଉତ୍ତପ୍ତ ହେବାଦ୍ୱାରା ସୌର ପାନେଲ୍‌ରେ ଥିବା ଧାତୁ ସଂପ୍ରସାରିତ ହେଉଛି । ଏହାଦ୍ୱାରା ସେ ଠିକ୍ ଖୋଲିପାରୁ ନାହିଁ । ଏଣୁ ଧାତୁମାନଙ୍କର ଉତ୍ତାପରେ ସଂପ୍ରସାରଣ ଓ ନିମ୍ନତାପ ଯୋଗୁଁ ସଙ୍କୋଚନ ହେବା ନିୟମ । ଏହାକୁ ସର୍ବନିମ୍ନ ତାପମାନରେ ସଙ୍କୁଚିତ ଅବସ୍ଥାରେ ଥିଲାବେଳେ ଖୋଲିବାକୁ ପୃଥିବୀ ପୃଷ୍ଠରୁ ନିର୍ଦ୍ଦେଶ ଦିଆଯାଉ ।

ବୈଜ୍ଞାନିକମାନେ ଏହି ସୂତ୍ରାନୁସାରେ ଚେଷ୍ଟା ଆରମ୍ଭକରି ସଫଳ ହେବା ସଙ୍ଗେ ସଙ୍ଗେ ଏହାଦ୍ୱାରା ଉପଗ୍ରହରେ ଥିବା ଜାଳେଣି ମଧ୍ୟ ସଞ୍ଚୟ କରିପାରିଲେ ଏବଂ ଉପଗ୍ରହର ଜୀବନକାଳ ମଧ୍ୟ ବୃଦ୍ଧିହେଲା ।

ଏହି ଛାତ୍ରୀଙ୍କର ବାପା ମଧ୍ୟ ଜଣେ ଅଣୁ ବୈଜ୍ଞାନିକ। ସଂପ୍ରତି ମିସ୍‌ରୂପାଙ୍କୁ ବମ୍ବେଠାରେ ଥିବା Indian Institute of Technology ରେ ଅନୁଷ୍ଠିତ ହେଉଥିବା Junior Science Congressର ଅଧିବେଶନକୁ ନିମନ୍ତ୍ରିତ କରାଯାଇଛି।

ଉପରୋକ୍ତ ସମ୍ବାଦରୁ ସ୍ପଷ୍ଟ ଅନୁମେୟ ଯେ ଛୋଟ ଶିଶୁଟିଏ ବା ବାଳକଟିଏ ହେଲେ ମଧ୍ୟ ଯଦି ଯୁକ୍ତିଯୁକ୍ତ ତଥ୍ୟ ତଥ୍ୟପୂର୍ଣ୍ଣ କଥାକହେ, ତେବେ ମଧ୍ୟ ସେହି କଥାକୁ ଫିଙ୍ଗି ନଦେଇ ମୂଲ୍ୟଦେଇ ଗ୍ରହଣ କରିନେବା ଉଚିତ । ତେବେ ସେହି ରୂପା ତାହାର ସୀମିତ ବୟସ ମଧ୍ୟରେ ଅସୀମ ଜ୍ଞାନର ଅଧିକାରିଣୀ ହୋଇପାରିଛି କେବଳ ତାହାର ଅନୁଭୂତି, ଶିକ୍ଷା ଓ ସୁସ୍ଥ ପରିବେଷ୍ଟନୀ ମାଧ୍ୟମରେ । ସେହିପରି ଓଡ଼ିଶାର ଇତିହାସରେ ଧର୍ମପଦ ମଧ୍ୟ ତାର ମାତ୍ର ବାରବର୍ଷ ବୟସରେ ଅପୂର୍ବ କାର୍ଯ୍ୟ ଦକ୍ଷତା ପ୍ରଦର୍ଶନ ପୂର୍ବକ ବାରଶହ କାରିଗରଙ୍କର ଜୀବନ ରକ୍ଷାକରି ଉତ୍କଳ ଇତିହାସରେ ଅମର ହୋଇ ପାରିଥିଲା । ଅବଶ୍ୟ ଏପରି ଶିଶୁ ବା ବାଳକଙ୍କ ସଂଖ୍ୟା ବିରଳ ହୋଇପାରେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । କାରଣ ରୁସୋଙ୍କ ମତରେ "ବାଳକ ତ ପବିତ୍ରହୋଇ ଜନ୍ମଗ୍ରହଣକରେ, କିନ୍ତୁ ସମାଜରେ ସାମାଜିକ ସଂସର୍ଗ ହିଁ ତାକୁ ଭ୍ରଷ୍ଟ କରିପକାଏ"।

ତେବେ ଏହି ପରିସ୍ଥିତିରେ ଘଟନାତ୍ମକ ଜଗତ୍ ଓ ପରମାତ୍ମକ ଜଗତ୍ ଏହି ଉଭୟର ସମନ୍ୱୟ ରକ୍ଷା କରଯାଇ ପାରିବ । ଯଦି ଶିକ୍ଷା ନୀତିରେ ନୀତିଶିକ୍ଷାର ସ୍ଥାନ ମୁଖ୍ୟରହେ, ତେବେ କେତେ ବର୍ଷପରେ ସୁସ୍ଥବାତାବରଣ ହୋଇ ଛାତ୍ରଛାତ୍ରୀମାନେ ଶୁଦ୍ଧ, ସଚ୍ଚରିତ୍ର ତଥା ବିବେକୀ ହୋଇ ପାରିବେ । ବାଳକ-ବାଳିକାମାନଙ୍କର ବିକ୍ଷିପ୍ତଚିତ୍ତକୁ ନିୟନ୍ତ୍ରଣକରି ଏକାଗ୍ରଚିତ୍ତ କରିବା ପାଇଁ ସତ୍ୟ, ବ୍ରହ୍ମଚର୍ଯ୍ୟ, ବ୍ୟାୟାମ, ବିଦ୍ୟାଭ୍ୟାସ, ଦେଶଭକ୍ତି, ଆତ୍ମତ୍ୟାଗ ଓ ଆତ୍ମଦର୍ଶନ ଶିକ୍ଷା ହିଁ ନିତାନ୍ତ ଆବଶ୍ୟକ । ଏଣୁ ଶାସ୍ତ୍ରରେ କୁହାଯାଇଛି—

"ସତ୍ୟେନ ବ୍ରହ୍ମଚର୍ଯ୍ୟେଣ ବ୍ୟାୟାମେନାଥ ବିଦ୍ୟୟା
ଦେଶ ଭକ୍ତ୍ୟାତ୍ମଯୋଗେନ ସମ୍ମାନାର୍ହଃ ସଦା ଭବ ।"

ଅର୍ଥାତ୍ ସତ୍ୟ, ବ୍ରହ୍ମଚର୍ଯ୍ୟ, ବ୍ୟାୟାମ, ବିଦ୍ୟା, ଦେଶଭକ୍ତି, ଆତ୍ମଯୋଗ ଇତ୍ୟାଦି ମାଧ୍ୟମରେ ଜଗତରେ ସମ୍ମାନ ପାଇବାପାଇଁ ସମର୍ଥ ହୁଅ" । ଏଣୁ ଏହି ସମସ୍ତ ଉପାଦାନଗୁଡ଼ିକ ଆତ୍ମଯୋଗରେ ହିଁ ନିହିତ ଅଛି ।

ଆତ୍ମଦର୍ଶନ କହିଲେ ଆତ୍ମତତ୍ତ୍ୱ ସମ୍ମିଳିତ ଦର୍ଶନ ଅର୍ଥାତ୍ ଆତ୍ମ ଶକ୍ତି ସମ୍ବନ୍ଧୀୟ ପୂର୍ଣ୍ଣଜ୍ଞାନ । ଏହାଫଳରେ ଜୀବାତ୍ମା ଓ ପରମାତ୍ମାର ମିଳନ ସହଜ ହୁଏ ଓ ମାନବ ପରିଶେଷରେ ମୁକ୍ତିଲାଭକରେ । ଏଣୁ ଏହାର ପ୍ରଥମ ସୋପାନ ହେଉଛି ଶିକ୍ଷା ମାଧ୍ୟମରେ ଆଧ୍ୟାତ୍ମିକ ଜ୍ଞାନର ବିକାଶ । ଆଧ୍ୟାତ୍ମିକ ଜ୍ଞାନର ବିକାଶରେ ସ୍ଥୂଳ ତଥା ସୂକ୍ଷ୍ମଜ୍ଞାନ ପରିମାର୍ଜିତ ଓ ସୁସଂସ୍କୃତ ହୁଏ । ଏଣୁ ଏଗୁଡ଼ିକୁ ସଫଳୀକୃତ କରିବାପାଇଁ ହେଲେ ଶିକ୍ଷା ମଧ୍ୟରେ ଯୋଗଶିକ୍ଷା ଦିଆଯିବା ବିଧେୟ । ଅବଶ୍ୟ ଆମ ରାଜ୍ୟରେ 10+2 ଶିକ୍ଷା ପଦ୍ଧତିରେ ଯୋଗକୁ ବାଧ୍ୟତାମୂଳକ କରାଯାଇଛି, ଏହା ଏକ ସୌଭାଗ୍ୟର କଥା ।

"ଯୋଗଶ୍ଚିତ ବୃତ୍ତିନିରୋଧଃ" ବୋଲି ପତଞ୍ଜଳି ସ୍ୱକୀୟ ଯୋଗଦର୍ଶନରେ ବର୍ଣ୍ଣନା କରିଛନ୍ତି । ଯୋଗ ଚପଳମତି ବାଳକ-ବାଳିକା, ବୃଦ୍ଧ-ବୃଦ୍ଧା, ଯୁବ-ଯୁବା ନିର୍ବିଶେଷରେ ସମସ୍ତଙ୍କର ବିକ୍ଷିପ୍ତ ଚିତ୍ତକୁ ନିୟନ୍ତ୍ରଣକରି ସାଂସାରିକମାୟା(Delusion) ଦିଗରୁ ମନକୁ ନିବୃତ୍ତକରି ସତ୍‌ମାର୍ଗରେ ପ୍ରବୃତ୍ତକରାଏ । "Yoga is the controller of mind". ଏହି ଯୋଗରେ ମଧ୍ୟ ରହିଛି ସତ୍ୟ, ଅହିଂସା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ ଇତ୍ୟାଦି । ଏହାକୁ ଯୋଗଶାସ୍ତ୍ରର ପ୍ରଥମ ଅଙ୍ଗ ଯମ କୁହାଯାଏ । ଯଥା— "ଅହିଂସା ସତ୍ୟାସ୍ତେୟବ୍ରହ୍ମଚର୍ଯ୍ୟାପରିଗ୍ରହାଃ ଯମାଃ" । (ପାତଞ୍ଜଳି ସାଧନାପାଦ—୩୦) । ମନ, ବାକ୍ୟ ଓ ଶରୀର ମାଧ୍ୟମରେ ସକଳ ପ୍ରାଣୀଙ୍କର ପୀଡ଼ା ଉପସ୍ଥିତ ନକରିବାର ନାମ "ଅହିଂସା" । ପରହିତାର୍ଥେ ବାକ୍ୟବ୍ୟୟ ତଥା ମନର ଯଥାର୍ଥଭାବ ହିଁ "ସତ୍ୟ" । ପରଦ୍ରବ୍ୟ ଅପହରଣ, ପରିତ୍ୟାଗ କରିବାରନାମ "ଅସ୍ତେୟ" । ବୀର୍ଯ୍ୟଧାରଣକରି ତେଜବାନ୍ ହେବାହିଁ "ବ୍ରହ୍ମଚର୍ଯ୍ୟ" । ଅତିରିକ୍ତ-ଭୋଗ ଲାଳସା ତ୍ୟାଗକରିବାର ନାମ "ଅପରିଗ୍ରହ", ଯୋଗର ଦ୍ୱିତୀୟ ଅଙ୍ଗ ହେଲା ନିୟମ । ଶୌଚ, ସନ୍ତୋଷ, ତପସ୍ୟା ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣୀଧାନ, ଏହି ପାଞ୍ଚ ପ୍ରକାର କ୍ରିୟାର ନାମ ନିୟମ । ବ୍ୟାୟାମ କରିବାର ମାଧ୍ୟମ ହେଲା ଆସନ, ପ୍ରାଣାୟାମ ଓ ପ୍ରତ୍ୟାହାର, ଏହି ତିନୋଟି ଯଥାକ୍ରମେ ଯୋଗର ତୃତୀୟ, ଚତୁର୍ଥ ଓ ପଞ୍ଚମ ଅଙ୍ଗ । ଏହାଦ୍ୱାରା ମାନବ ସଂସାରରୁ ବିଷୟ ମଦକୁ ପରିତ୍ୟାଗକରି ନିଜର ସ୍ୱାର୍ଥପରତାକୁ ତ୍ୟାଗ-କରିପାରେ । ଫଳରେ ସାମାଜିକ ଚେତନା ବୃଦ୍ଧିପାଇ ମାନବକୁ "ଦେଶଭକ୍ତି"ର ପ୍ରମାଣ ଦିଏ । ଆତ୍ମଯୋଗର ଅର୍ଥ ହେଉଛି ଜୀବାତ୍ମା ଓ ପରମାତ୍ମାର ସଂଯୋଗ । ଏହି ସଂଯୋଗ କେବଳ ଯୋଗ ମାଧ୍ୟମରେ ଯୋଗର ୬ଷ୍ଠ, ୭ମ ଓ ୮ମ ଅଙ୍ଗ ଯଥାକ୍ରମେ ଧାରଣା, ଧ୍ୟାନ, ସମାଧିଦ୍ୱାରା ହିଁ ସମ୍ଭବ ହୋଇଥାଏ । ଏହି ତିନୋଟି ଅଙ୍ଗଦ୍ୱାରା ମାନବର ଆଧ୍ୟାତ୍ମିକ ବିକାଶଘଟି ମାନବ ଘଟନାତ୍ମକ ଜଗତ୍ ତଥା ପରମାତ୍ମକ ଜଗତ୍ ଉଭୟ ମଧ୍ୟରେ ଯୋଗାଯୋଗ ରକ୍ଷା କରିବାରେ ସମର୍ଥ ହୋଇ ପାରେ । ଏହି ଆଠଟି ଅଙ୍ଗ ଥିବାରୁ ଯୋଗର ଅନ୍ୟ ନାମ ଅଷ୍ଟାଙ୍ଗ ଯୋଗ ।

ଆଜି ପରିବାରର ଶିଶୁ କାଲି ଦେଶର ନାଗରିକ । ତେଣୁ ଏହି ଶୈଶବ ଅବସ୍ଥାରୁ ଯୋଗ ମାଧ୍ୟମରେ ଓ ଆଧ୍ୟାତ୍ମିକ ପରିବେଷ୍ଟନୀ ମାଧ୍ୟମରେ ସତ୍‌ଶିକ୍ଷା ପ୍ରଦାନ ପୂର୍ବକ ସରଳ ଶିଶୁ ତଥା ବାଳକ-ବାଳିକାମାନଙ୍କୁ ସୁସଂଯତ କରି ସୁନାଗରିକ ଭାବରେ ଗଢିତୋଳିବା ହିଁ ସମାଜର କର୍ତ୍ତବ୍ୟ । ବାଳକ-ବାଳିକାମାନଙ୍କୁ ପାଶ୍ଚାତ୍ୟାଭିମୁଖୀ ଶିକ୍ଷା ନ ଦେଇ ସ୍ୱଦେଶର ଚିନ୍ତନ ସମ୍ବନ୍ଧୀୟ ତଥା ନିଜ ଦେଶର ସଂସ୍କୃତି ଐତିହ୍ୟ ଓ ପରଂପରା ସମ୍ବନ୍ଧୀୟ ଶିକ୍ଷା ଦିଆଯିବା ବାଞ୍ଛନୀୟ । ଶିକ୍ଷାର ମୂଳ ଉଦ୍ଦେଶ୍ୟ ହେବା ଦରକାର ବାଳକ-ବାଳିକାମାନଙ୍କର ଚରିତ୍ର ଗଠନ, ଶୁଦ୍ଧ ବ୍ୟବହାର ଓ ମନରେ ପବିତ୍ର ଚିନ୍ତାଧାରା ସୃଷ୍ଟି କରିବା । ଚରିତ୍ର ଗଠନ ନହେଲେ କିମ୍ବା ସତ୍‌ଶିକ୍ଷା ପ୍ରଦାନ କରା ନ ଗଲେ ସେ ଶିକ୍ଷାର ସାଧନା ନିରର୍ଥକ । ଏପରି ସାଧନା ପିଲାଙ୍କୁ ଅସାଧୁରେ ପରିଣତ କରି ଦେଶର ଶତ୍ରୁ ଭାବରେ ଗଢିବା ଛଡ଼ା ଆଉ କିଛି ହୋଇ ନ ପାରେ । ଏପରି ଅସତ୍ ପୁସ୍ତକର ଅଧ୍ୟୟନ ବିଷପାନ ସଦୃଶ ବିକଳାଙ୍ଗ ସୃଷ୍ଟି କରିବ ସିନା, ସୁସ୍ଥ ଶରୀର ସୃଷ୍ଟିରେ ସମର୍ଥ ହୋଇ ପାରିବ ନାହିଁ । ଏଣୁ ଟଲଷ୍ଟୟ କହିଛନ୍ତି—

"ଖରାପ ପୁସ୍ତକ ଅଧ୍ୟୟନ କରିବା ଜହର ପାନ କରିବା ସହିତ ସମାନ" ।

ସଂସ୍କୃତ ଶିକ୍ଷକ,
ଦାଶରଥି ହାଇସ୍କୁଲ, ଓଳସିଂହ, ପୁରୀ ।

ଜନସେବା କାର୍ଯ୍ୟର ମାନ ଉନ୍ନତ କରିବା ପାଇଁ ମୁଁ ପ୍ରତିଶ୍ରୁତିବଦ୍ଧ । ଏହି କାର୍ଯ୍ୟରେ ସଂପୃକ୍ତ ଥିବା ସମସ୍ତଙ୍କୁ ମୁଁ କହିବାକୁ ଚାହେଁ ଯେ ସେମାନେ ନିଜ ନିଜ କାର୍ଯ୍ୟରେ ସଚ୍ଚୋଟ ଓ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କଲେ ସେମାନଙ୍କୁ ସମସ୍ତ ପ୍ରକାର ବାହ୍ୟ ଚାପ ଓ ହସ୍ତକ୍ଷେପରୁ ପୂର୍ଣ୍ଣମାତ୍ରାରେ ରକ୍ଷା କରାଯିବ ।

ଶ୍ରୀ ରାଜୀବ ଗାନ୍ଧୀ

# ସମୃଦ୍ଧିର ପାଞ୍ଚ ବର୍ଷ

ବର୍ତ୍ତମାନର ସରକାରଙ୍କ ନିରବଚ୍ଛିନ୍ନ ଉଦ୍ୟମ ଓ ସମର୍ପିତ କର୍ମତତ୍ପରତା ଯୋଗୁଁ ରାଜ୍ୟରେ ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ପ୍ରଗତି ହାସଲ ହୋଇ ପାରିଛି । ରାଜ୍ୟରେ ଇପ୍ସିତ ବାତାବରଣ ସୃଷ୍ଟି ହୋଇଛି । କୃଷି କ୍ଷେତ୍ରରେ ଥିବା ସ୍ଥାଣୁତ୍ୱ ଦୂର ହୋଇଛି । ଓଡ଼ିଶାକୁ ଦାରିଦ୍ର୍ୟ, ନିଷ୍କ୍ରିୟତା ଓ ଅବହେଳିତ ଅବସ୍ଥାରୁ ମୁକ୍ତକରି ଅନ୍ୟାନ୍ୟ ପ୍ରଗତିଶୀଳ ରାଜ୍ୟମାନଙ୍କ ସଙ୍ଗେ ସମକକ୍ଷ କରାଇବା ପାଇଁ ବର୍ତ୍ତମାନର ସରକାର ସଂକଳ୍ପବଦ୍ଧ ।

❊ ଓଡ଼ିଶାର ଖାଦ୍ୟଶସ୍ୟ ଉତ୍ପାଦନ ବିଗତ ପାଞ୍ଚ ବର୍ଷ ମଧ୍ୟରେ ଶତକଡ଼ା ୨୫ ଭାଗ ବୃଦ୍ଧି ଲାଭ କରିଛି । ଚିନାବାଦାମ ଉତ୍ପାଦନରେ ଓଡ଼ିଶାର ହେକ୍ଟର ପିଛା ଉତ୍ପାଦନ ଦେଶରେ ପ୍ରଥମସ୍ଥାନ ଅଧିକାର କରିଛି ।

❊ ସାଢ଼େ ଦଶଲକ୍ଷ ଏକରରୁ ଅଧିକ ଜମିରେ ଜଳସେଚନର ବ୍ୟବସ୍ଥା କରାଯାଇ ପାରିଛି ।

❊ ନାଲ୍‌କୋ ଆଲୁମିନିୟମ୍ କାରଖାନା, ବଲାଙ୍ଗୀରରେ ଅସ୍ତ୍ରଶସ୍ତ୍ର ଉତ୍ପାଦନ କାରଖାନା, ଗୋପାଳପୁରଠାରେ ପ୍ରତିରକ୍ଷା ତାଲିମ୍ କେନ୍ଦ୍ର, ତାଳଚେର-ସମ୍ବଲପୁର ରେଳପଥ, ସମ୍ବଲପୁର ଠାରେ ଓଡ଼ିଶାର ଦ୍ୱିତୀୟ ରେଳବାଇ ଡିଭିଜନ ପ୍ରତିଷ୍ଠା, ଭୁବନେଶ୍ୱରରେ ରେଳବାଇ ସର୍ଭିସ୍ କମିଶନ କାର୍ଯ୍ୟାଳୟ ପ୍ରତିଷ୍ଠା ଆଦି ଓଡ଼ିଶାର ପ୍ରଗତି ପଥରେ ଏକ ଏକ ମାଇଲ ଖୁଣ୍ଟ ।

❊ ଶାରୀରିକ ଅକ୍ଷମ ଲୋକଙ୍କ ପାଇଁ ଚାକିରୀରେ ଶତକଡ଼ା ତିନିଭାଗ ସ୍ଥାନ ସଂରକ୍ଷଣ କରାଯାଇଛି । ଏକ ନୂତନ ପେନ୍‌ସନ୍ ଯୋଜନା ଜରିଆରେ ଚଳିତ ବର୍ଷ ଦଶ-ହଜାର ବିକଳାଙ୍ଗଙ୍କୁ ପେନ୍‌ସନ୍ ଦିଆଯାଇଛି ।

❊ କ୍ରୀଡ଼ାର ବିକାଶ ପାଇଁ ବହୁ ନୂତନ ଷ୍ଟାଡ଼ିୟମ ନିର୍ମାଣ ଓ ଖେଳାଳୀମାନଙ୍କ ତାଲିମ୍ ବ୍ୟବସ୍ଥା କରାଯାଇଛି । ସାହିତ୍ୟିକ, କଳାକାର, କ୍ରୀଡ଼ାବିତ୍‌ମାନଙ୍କୁ ବହୁ ଅଧିକ ସଂଖ୍ୟାରେ ପେନ୍‌ସନ୍ ଦିଆଯାଇଛି ।

ଓଡ଼ିଶାକୁ ଏକ ଅଗ୍ରଗାମୀ ରାଜ୍ୟରେ ପରିଣତ କରିବାପାଇଁ
ଆସନ୍ତୁ ସମସ୍ତେ ମିଳିମିଶି କାମ କରିବା ।

**ଓଡ଼ିଶା ସରକାର**
**ସୂଚନା ଓ ଲୋକସମ୍ପର୍କ ବିଭାଗ**

# ଭାରତୀୟ ସଙ୍ଗୀତର ଦର୍ଶନ

ମୂଳ ଇଂରାଜୀ ରଚନା—
ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡା

ଭାଷାନ୍ତର—
ଶ୍ରୀମତୀ ମିନତି କାନୁନ୍‌ଗୋ

ସୃଷ୍ଟି ବୈଚିତ୍ର୍ୟମୟ । ପ୍ରତ୍ୟୁଷରୁ ସୂର୍ଯ୍ୟୋଦୟ ମାଧ୍ୟମରେ ପ୍ରକୃତିର ଔଜଲ୍ୟ ଓ ରାତ୍ରିର ନୀଳ ଆକାଶର ଦିଗ୍‌ବଳୟରେ ଚନ୍ଦ୍ରର ସ୍ନିଗ୍ଧ ଜ୍ୟୋତ୍ସ୍ନା ସାଙ୍ଗକୁ ତାରକାମାନଙ୍କ ଜ୍ୟୋତି ବିକୀରଣ ଜଣେ ବେଶ୍ ଉପଲବ୍ଧ କରିପାରିବ । ଏଗୁଡ଼ିକ ନିୟମିତ, ସମୟାନୁବର୍ତ୍ତୀ ଓ ନିର୍ଦ୍ଦିଷ୍ଟ ଶୃଙ୍ଖଳାରେ ପରିଚାଳିତ ।

ଏକ ଉନ୍ନତ ସଂସ୍କୃତି ସଂପନ୍ନ ଦେଶ ଭାରତର ରହିଛି ସମୃଦ୍ଧ ଦାର୍ଶନିକ ପୃଷ୍ଠଭୂମି । ପ୍ରକୃତି ଏଠାରେ ମନୋହାରିଣୀ, ବିଚିତ୍ରବର୍ଣ୍ଣୀ ତଥା ଶିକ୍ଷାଦାତ୍ରୀ । ବାତାବରଣ ମୁକ୍ତ ଓ ପବିତ୍ରତାପୂର୍ଣ୍ଣ । ନିଃସ୍ୱାର୍ଥପରତା ଏହାର ଅଧିବାସୀମାନଙ୍କର ଅସ୍ଥି ମଜ୍ଜାଗତ । ଆଜିର ଆଣବିକ ବୈଜ୍ଞାନିକ ବିଶ୍ୱରେ ଅଦ୍‌ଭୁତ ପ୍ରତୀତ ହିମାଳୟର ନଭାସ୍ପର୍ଶୀ ଶୃଙ୍ଗମାଳା ସମ୍ଭ୍ରମର ସହିତ ସୂଚାଇ ଦିଏ ଯେ ଏ ଦେଶ ଅଲୌକିକ ଓ ମହାନୁଭବ । ଅତଳ ପାରାବାର ଗର୍ବର ସହିତ ଉଦ୍‌ଘୋଷଣ କରେ ଯେ ଏ ଦେଶ ଅମାପ ପ୍ରାକୃତିକ ବିଭାବରେ ସମୃଦ୍ଧ ଓ ଲୁକ୍‌କାୟିତ ସଂପଦରେ ପରିପୂର୍ଣ୍ଣ । ମାନବ ସଂସ୍କୃତି ସଂପର୍କରେ ଆମର ଧାରଣା ହେଉଛି ଅଧ୍ୟାତ୍ମଗତ । ଜୀବାତ୍ମାକୁ ପରମାତ୍ମା ସହିତ ସଂଯୋଗ କରିବା, ଆତ୍ମବଳୀ ଦେଇ ସତ୍ୟରେ ଯୁକ୍ତ ହେବା, ଶାନ୍ତି ସ୍ଥାପନ କରିବା, ସରଳ ଓ ଧର୍ମପରାୟଣ ଜୀବନ ଯାପନ କରିବା ସଙ୍ଗେ ସଙ୍ଗେ ଗଠନ ମୂଳକ କାର୍ଯ୍ୟ କରିବା, ମାନବିକ ନିରାପତ୍ତା ପାଇଁ ସଂଘର୍ଷ କରିବା, ନିସ୍ୱାର୍ଥପର ଭାବରେ ଆନନ୍ଦର ସନ୍ଧାନ କରିବା ଓ ଅନନ୍ତ ଅଭିମୁଖେ ଗତିକରି ମୁକ୍ତି ଲଭପାଇଁ ଚେଷ୍ଟା କରିବାକୁ ଭାରତୀୟମାନେ ଅଧିକ ପସନ୍ଦ କରିଥାନ୍ତି ।

ସେହି ଅନନ୍ତ କ'ଣ? ଓ ଆନନ୍ଦ କ'ଣ ? ଆମେ ଶାଶ୍ୱତ ଶକ୍ତିରେ ବିଶ୍ୱାସ ସ୍ଥାପନ କରୁ । ଆମର ଦୃଢ଼ ବିଶ୍ୱାସ ଯେ ପ୍ରତ୍ୟେକ ଲୋକ ସେହି ଅଦୃଶ୍ୟ ସର୍ବ ଶକ୍ତି ଦ୍ୱାରାହିଁ ଚାଳିତ । ଆମର ବିଶ୍ଳେଷ ଶକ୍ତି ଯେଉଁଠାରେ ବିଫଳ ହୁଏ, ସେହିଠାରେ ଆମେ ପରାଜିତ ହେଉ । ଏ ଜୀବନର ଆରମ୍ଭ ଓ ଶେଷ କେଉଁଠି ? ଜାଣି ହୁଏନା । ଜୀବନ ଓ ମୃତ୍ୟୁର ପରସ୍ପରର ଗତି ଧାରକୁ ମୂଲ୍ୟାୟନ କରିବାକୁ ଚେଷ୍ଟାକରି ବିଫଳ ହେବାପରେ ଆମେ ଆମର ଅଭଯାନ ଓ ଅଭିମାନକୁ ସେହି ସର୍ବଶକ୍ତି ଚରଣ ତଳେ ଅର୍ପଣ କରୁ ତାହା ଅଦୃଶ୍ୟ ଅସ୍ପୃଶ୍ୟ ଓ ଆମ ପହଞ୍ଚର ଉର୍ଦ୍ଧ୍ୱରେ ତାହାହିଁ ଅନନ୍ତ ।

ଆଗରୁ ଅନବଧାରିତ ଓ ଜୀବନର ମଧୁର ଆବେଗ ହେଉଛି ଆନନ୍ଦ । ଏହା ସ୍ୱତଃସ୍ଫୂର୍ତ୍ତ ଓ ସଂପୂର୍ଣ୍ଣ କରୁଣ ରାଗିଣୀରୁ ମୁକ୍ତ । ଯାହା ସୁଖ ଏବଂ ଯାହା ସୁଖରୁ ଉଦ୍‌ଭୂତ ତାହା ସର୍ବଦା ଆନନ୍ଦ ନାମରେ ଖ୍ୟାତ । ସେହି ସୁଖ (ଚିଦାନନ୍ଦ)ହିଁ ସଙ୍ଗୀତ ।

ସଙ୍ଗୀତର ମୂଳ ସନ୍ଧାନରେ ଆମେ ପ୍ରାଗ୍ ବୈଦିକ ଯୁଗକୁ ଯିବାକୁ ପଡ଼ିବ । ଭାରତୀୟ ପୁରାଣ ମତରେ ସଙ୍ଗୀତର ଇତିହାସ ଓ ଏହାର ଉଦ୍‌ଭାବନ ଅତିମାନବିକ ଓ ଅତି ପ୍ରାକୃତିକ । ମହିମାମୟୀ ଶ୍ରୀ ଆଦିମାତା ଶକ୍ତିଶାଳୀ ଏକାଗ୍ରତା ଓ ଜାତ ଶକ୍ତିର ଭାବନାରୁ ସାରା ବିଶ୍ୱକୁ ସୃଷ୍ଟି କରିଛନ୍ତି । ସେ ଯେବେ ଚକ୍ଷୁ ଉନ୍ମୀଳନ କରି ଆପଣା ସୃଷ୍ଟିକୁ ଅବଲୋକନ କଲେ ଦେଖିଲେ ଏହା କି ମହିମାମୟ, ପୁଲକ ସଞ୍ଚାରୀ, ଶାନ୍ତ, ବିସ୍ମୟକର ଓ ଅନନ୍ତ । ତାହାଙ୍କ ଅନ୍ତରାତ୍ମା ଓ ମାନସ ରାଜ୍ୟରେ ଅସ୍ପୁମାରୀ ଆନନ୍ଦ ଆପଣା ଛାଏଁ ଭରିଗଲା । ପ୍ରଣବରୂପୀ ଓଁକାର ଝଙ୍କୃତ ହୋଇ ତାଙ୍କର ଚିର ବିକାଶରୁ ଝରିଗଲା । କାଳକ୍ରମେ ଏହା ସଙ୍ଗୀତର ସ୍ରୋତରେ ପରିଣତ ହୋଇ ତାହାଙ୍କ ଶିରା ପ୍ରଶିରାରେ ଉସଘନ ଭାବରେ ପ୍ରବାହିତ ହେଲା । କଣ୍ଠ ଗାନ ଆରମ୍ଭ କଲା । ଅନ୍ତର ଓ ନାଡ଼ିକାମାନେ ସେହି ସ୍ୱନରେ ତାଳ ଦେଇ ସ୍ପନ୍ଦିତ ହେଲେ ଏବଂ ଆତ୍ମା ଓ ଶରୀର ନାଡ଼ିର ସେ ସ୍ପନ୍ଦନ ଅନୁସାରେ ନୃତ୍ୟ କରିବାକୁ ଲାଗିଲେ । ନାଦବ୍ରହ୍ମ ଚତୁର୍ଦ୍ଦଶ ଦଳ ଚକ୍ରରୁ ଆରମ୍ଭ ହୋଇ ହୃଦୟ, କଣ୍ଠ ଓ ମୂର୍ଦ୍ଧନା ଅତିକ୍ରମ କରି ମନ୍ଦ୍ର, ମଧ୍ୟମ ଓ ତାରକ ନାମକ ତିନୋଟି ସ୍ୱର ଭେଦ କଲାପରେ କାଳକ୍ରମେ ତାହା ଅନନ୍ତରେ ପହଞ୍ଚିଲା । ଫଳରେ ମହିମାମୟୀ ଆଦିମାତା ଆପଣାକୁ ଭୁଲି ସେ ସମୟରେ ଶାଶ୍ୱତ ସୁଖ ଲଭ କଲେ । ଏହାହିଁ ଆତ୍ମ ବିସ୍ମୃତି । ସେହି ସଙ୍ଗୀତ ସୃଷ୍ଟି ଉପରେ ଆଶୀଷ ରୂପେ ବିଛୁରିତ ହେବା ସଙ୍ଗେ ସଙ୍ଗେ ସ୍ଥିର ଓ ନିଶ୍ଚଳ ଭାବେ ଦଣ୍ଡାୟମାନ ଥିବା ଏହି ସୃଷ୍ଟି ଆଲୋକ ଓ ଜୀବନ ସହିତ ସେମାନଙ୍କ ମଧ୍ୟରେ ନିହିତ ଚାରିତ୍ରିକ ବୈଶିଷ୍ଟ୍ୟ ଓ କ୍ରିୟା କଳାପ ଘେନି ଚଳିବାକୁ ଆରମ୍ଭ କଲା ।

ସାରା ବଣ୍ଟି ବିଭିନ୍ନ ସ୍ୱର ଧରି ଆପଣା ଆପଣାର ସ୍ୱର ଯନ୍ତ୍ରର ସ୍ୱଭାବ ଓ ସାଧ୍ୟ ଅନୁସାରେ ଗାନ କରିବାକୁ ଲାଗିଲେ । ଏହି ଭଳି ସଙ୍ଗୀତର ସଂପୂର୍ଣ୍ଣ ସ୍ୱରୂପ ହେଲା ଗୀତ, ବାଦ୍ୟ ଓ ନୃତ୍ୟର ସାର୍ଥକ ସମନ୍ୱୟ । ସୁତରାଂ ଯଥାର୍ଥରେ କୁହାଯାଇଛି—

"ଗୀତଂ ବାଦ୍ୟଂ ଚ ନୃତ୍ୟଂ ଚ ତ୍ରୟଂ ସଙ୍ଗୀତ ମୁଚ୍ୟତେ" ।

ଏହି ସଙ୍ଗୀତ ସ୍ୱର୍ଗୀୟ । ଆଦିମାତା ପ୍ରକୃତିର ପ୍ରତି ଅଙ୍ଗ ଯଥା—ମନୁଷ୍ୟ, ପଶୁ, ପକ୍ଷୀ, ଉଦ୍ଭିଦ, କ୍ଷିତି, ଅପ୍ ତେଜ, ମରୁତ୍ ଓ ବ୍ୟୋମ ଆଦିରେ ଏହି ସଂଗୀତକୁ ଏକ ପ୍ରବୃତ୍ତି ଭାବରେ ଖଞ୍ଜିଦେଲେ । ଏହା ସାର୍ବଜନୀନ । ସଂଗୀତ ହେଉଛି ମହାସୁଖ ଏବଂ ଶକ୍ତି-ଉତ୍ସର ଜନନୀ । ଏହା ଅପାର୍ଥିବ ତଥା ଅତ୍ୟାବଶ୍ୟକ । ଏହି ଆଧ୍ୟାତ୍ମିକ ଆଣବିକ ଶକ୍ତି ସିଦ୍ଧି ଦିଗରେ ସ୍ଥଳିତ କରାଯାଇପାରେ । ଏହା ଶରୀର ଆଶାବାଦୀର ଉତ୍ସ । ମନ ଓ ଆତ୍ମାପାଇଁ ସ୍ୱାଦିଷ୍ଟ ଓ ପୁଷ୍ଟିକାରକ ଖାଦ୍ୟରେ ପୂର୍ଣ୍ଣ । ଏହି ସଙ୍ଗୀତ ଅନ୍ତର୍ଦୃଷ୍ଟି ସମ୍ପନ୍ନ । ଗଣିତପରି ସେ ଅଭ୍ରାନ୍ତ, ବିଜ୍ଞାନ ପରି ସର୍ବସିଦ୍ଧ, ପ୍ରକୃତି ପରି ନିୟମ ନିଷ୍ଠ, ଏକାଗ୍ରତା ସମ ଦୃଢ଼, ମନପରି ବେଗଶୀଳ, ଉଦିତ ସୂର୍ଯ୍ୟପରି ବର୍ଣ୍ଣାଢ଼୍ୟ । ପ୍ରତିଭାଶାଳୀପରି ବୁଦ୍ଧିଦୀପ୍ତ । ନେତୃତ୍ୱଳର ଭଙ୍ଗୀରେ ପ୍ରୋଜ୍ଜ୍ୱଳ, ସେନାପତିଙ୍କ ପରି ପ୍ରବଳ ଶକ୍ତିବାନ । ଇଚ୍ଛାଶକ୍ତିପରି ବଳବାନ୍, ପ୍ରବୃତ୍ତି ପରି ଅନ୍ଧ, ମହତ୍ ଗୁଣପରି ଭଦ୍ର, ମଧ୍ୟ ସମୁଦ୍ରପରି ଶାନ୍ତ, ଏକଛତ୍ର ଶାସକପରି ଶକ୍ତିଧର, କଳ୍ପନାଶକ୍ତିପରି ଅଳଙ୍କାର ମଣ୍ଡିତ, ଜୀବନପରି ଆଦରଣୀୟ ଓ ସ୍ୱୟଂଶକ୍ତିପରି ଶକ୍ତିଶାଳୀ । ଏହା ସକଳ ବୋଧଦାୟୀ ଇନ୍ଦ୍ରିୟଙ୍କୁ ଆୟତ୍ତରେ ରଖେ । ଧାର୍ମିକକୁ ଆନନ୍ଦ ପ୍ରଦାନ କରିବା ସଙ୍ଗେ ସଙ୍ଗେ ନସ୍ତିକକୁ ବିନାସର୍ତ୍ତରେ ଆତ୍ମସମର୍ପଣ କରାଇବାକୁ ବାଧ୍ୟ କରେ । ଆମ କଳ୍ପନାର ଅତୀତ ଏକ ଆକୃତି ତାର ଥାଇପାରେ ମାତ୍ର ଏହା ଅନନ୍ତରୂପରେ ଆବିର୍ଭୂତ ହୋଇଥାଏ । ଏହା ବିଶ୍ୱବ୍ୟାପକ ସଙ୍ଗୀତକାରୀର ରୁଚି ଅନୁସାରେ ସେ ବସନଭୂଷିତ ହୁଏ । ପ୍ରଚୁର ପ୍ରକାଶଭଙ୍ଗୀ ଔଜ୍ଜ୍ୱଲ୍ୟ ସୃଷ୍ଟିକରେ ଏବଂ ପ୍ରେମିକ ପ୍ରେମିକାମାନଙ୍କୁ ପାଗଳ କରିଦିଏ । ଆଉ ବା କ'ଣ ସେ କରି ନପାରେ ? ତା ସହିତ ବିଳାସ ବ୍ୟସନରେ କେହି ତୁଳନା ହେବାକୁ ସାହସ କରିପାରିବ ନାହିଁ । ତାର ନିୟମ ବିରୁଦ୍ଧ ବାହାରେ ଯିବାପାଇଁ ସକଳ ଉଦ୍ୟମକୁ ପଣ୍ଡ କରିଦିଏ ।

## ପ୍ରକୃତି କିପରି ଗାଏ

ବର୍ତ୍ତମାନ ପ୍ରକୃତିର ସମୀକ୍ଷା କଲେ ମହାସାଗର କଳ କଳ ନିନାଦରେ ସ୍ୱର ଝଙ୍କୃତ କରେ । ଦୁନ୍ଦୁଭି ନାଦରେ କୋଳାଗ୍ରତ କରେ ଓ ତରଙ୍ଗାୟିତ ହେଉରେ ନୃତ୍ୟ କରେ । ସାଗର ବେଳାର ନୃତ୍ୟ ଦେଖି ଓ ନୀଳ ଜଳରାଶିର ସଙ୍ଗୀତ ମାଧୁରୀକୁ ଉପଭୋଗ କରି ଜଣେ ମୋହାଚ୍ଛନ୍ନ ହୋଇଯାଏ ।

ବାୟୁ ହେଉଛି ଧ୍ୱନିର ଉତ୍ପାଦକ, ସ୍ୱଚ୍ଛକ ଓ ପଥପ୍ରଦର୍ଶକ । ବିଭିନ୍ନ ସ୍ୱର ଓ ରାଗ ରାଗିଣୀଗୁଡ଼ିକୁ ଏହା ସାରାବିଶ୍ୱରେ ପ୍ରଖ୍ୟାପିତ କରେ । ସ୍ଥପ ହେଉଛି ସ୍ୱରର ମୌଳିକ ଉପାଦାନ ଓ ଏହା ନିର୍ଦ୍ଧାରିତ ସୀମାରୁ ଆରମ୍ଭ ହୋଇ ଅସୀମକୁ ଧାବିତ ହୁଏ । ବାୟୁ କେବଳ ଧ୍ୱନିର ଉତ୍ପାଦକ ନୁହେଁ ବରଂ ଏହା ହେଉଛି ସ୍ୱୟଂ ଧ୍ୱନି । ପ୍ରବାହିତ ହେବା ସଙ୍ଗେ ସଙ୍ଗେ ଏହା ଗାନ କରେ ଏବଂ ଏହାର ସ୍ଥପ ସହିତ ସମତାଳ ରକ୍ଷି ନୃତ୍ୟ କରେ । ଅର୍ଦ୍ଧରାତ୍ରିର ନୀରବତାରେ କର୍ମକ୍ଳାନ୍ତ ବିଶ୍ୱ ଯେତେବେଳେ ଶାନ୍ତ ହୋଇଯାଏ, ଧରଣୀ ଓ ଆକାଶର ମିଳନର ଧ୍ୱନି ଭିତରୁ ଏକ ଝଙ୍କାର ଶୁଣାଯାଇପାରେ । ଧରଣୀରାଣୀ ସୂର୍ଯ୍ୟ ଚନ୍ଦ୍ର ଓ ତାରକାରାଜିଙ୍କ ଚତୁଃପାର୍ଶ୍ୱରେ ନୃତ୍ୟ କରେ ।

ବସନ୍ତକାଳୀନ ପ୍ରକୃତି ଆନନ୍ଦରେ ଉଦ୍ଭାସିତ ହୋଇ ମଧୁର ମଳୟ ବିଶ୍ୱସାରା ବ୍ୟାପ୍ତ ହେଲାବେଳେ ଶ୍ରାନ୍ତକ୍ଳାନ୍ତ ମନକୁ କୋକିଳର କାକଳି ଶାନ୍ତ କରି ଆନନ୍ଦିତ କରାଏ । କ'ଣ ସେ ଗାଏ ? କାହିଁକି ଗାଏ ଓ କାହାପାଇଁ ଗାଏ, ଏ କଥା କେହି ଜାଣନ୍ତିନାହିଁ । ମାତ୍ର ସେ ଲଳିତ ଗାନ ଶ୍ରୋତାର ଆତ୍ମାରେ କମ୍ପନ ସୃଷ୍ଟିକରେ । ମୃତରେ ଜୀବନ ସଞ୍ଚାର କରେ, ବିଷର୍ଣ୍ଣ ମନକୁ ଆନନ୍ଦିତ କରେ ଏବଂ ନିଦ୍ରିତକୁ ଜାଗ୍ରତ କରାଏ । ଏହା ସବୁରି ମନରେ ଓ ଆତ୍ମାରେ ସ୍ୱ ସ୍ୱ ଅନୁକ୍ରମରେ ଅନୁଭୂତିଗୁଡ଼ିକରେ ପ୍ରତିଫଳିତ ହୁଏ । ଏହା ଦମ୍ପତିଙ୍କର ଉଦ୍ଦୀପନା ଉଦ୍ଦୀପତ କରାଏ । ନିଃସଙ୍ଗକୁ କନ୍ଦାଏ ତାର ସଙ୍ଗୀପାଇଁ ଏବଂ ନିଭୃତରେ ଚିନ୍ତା ବା ଗଭୀର ଚିନ୍ତା କରିବାପାଇଁ ସହାୟ କରାଏ । ବୃକ୍ଷରାଜି ଓ ପୁଷ୍ପ ସମୂହ ଗାଆନ୍ତି ଓ ନାଚନ୍ତି । ପ୍ରଫୁଲ୍ଲିତ ପଦ୍ମ ସୂର୍ଯ୍ୟଙ୍କୁ ଭକ୍ତି କରି ଗୀତ ଗାଏ ଓ ନାଚେ, ଯେତେବେଳେ ସେ ପ୍ରସ୍ଫୁଟିତ ହୋଇ ସୁଗନ୍ଧିତ ସୁବାସରେ ମହକିତ ହୁଏ । ତାର ସେଇ ଗୀତର ପ୍ରତ୍ୟୁତ୍ତରରେ ଗୁଞ୍ଜନ କରେ ଓ ନୃତ୍ୟ କରେ ଭ୍ରମର ! ସମ୍ମୋହିତ ହୋଇ ସେ ପଦ୍ମ ବକ୍ଷରେ ରାତ୍ରି ଯାପନ କରେ । ମୁଦିତ ସକମଳର ବନ୍ଧନରେ ନିଦ୍ରାଯାଏ ଐନ୍ଦ୍ରଜାଲିକ ମୋହରେ ଆତ୍ମହରା ହୋଇ । ଶକ୍ତ କାଠ ଖଣ୍ଡକୁ ଛିଦ୍ର କରିଦେବା ସାମର୍ଥ୍ୟ ଥାଇ ସୁଦ୍ଧା ସେ ପାଖୁଡ଼ାର କୌଣସି କ୍ଷତି କରେ ନାହିଁ ଏବଂ ଜୀବନ ସଙ୍ଗୀତ ଗାନ କରି ସେ ଆତ୍ମ ବିସ୍ମୃତି ହୋଇଯାଏ ।

## ଭାରତୀୟ ପୁରାଣ କ'ଣ କହେ

ଭାରତୀୟ ପୁରାଣ ମତରେ ସଙ୍ଗୀତଜ୍ଞାନର ଉଦ୍ଭାବକ ହେଉଛନ୍ତି ବ୍ରହ୍ମା । ସଙ୍ଗୀତରେ ସ୍ତୋତ୍ର ଓ ପ୍ରାର୍ଥନା ରଚିତ ହୋଇଥିବା ପ୍ରଥମ ପ୍ରାମାଣିକ ଗ୍ରନ୍ଥ ସାମବେଦ । ଦାନ, ତପ ଜପ, ଯଜ୍ଞ, ଶାନ୍ତି, ଅଭୟ, ସିଦ୍ଧି ଏବଂ ମୋକ୍ଷ ପ୍ରଭୃତି ଫଳ ପ୍ରାପ୍ତିପାଇଁ ସଙ୍ଗୀତହିଁ ସର୍ବୋତ୍କୃଷ୍ଟ ପନ୍ଥାବୋଲି ଏହା କହିଥାଏ । ବିଶ୍ୱ ଶାନ୍ତି ଓ ସମୃଦ୍ଧ ସ୍ଥାପନପାଇଁ ଏହା ମଧ୍ୟ ସର୍ବୋତ୍କୃଷ୍ଟ ମାଧ୍ୟମ ।

ପୁରାଣ ଯୁଗର ସୂତ୍ରଧର ମହର୍ଷି ନାରଦ ଥିଲେ ଆଦ୍ୟ ସଙ୍ଗୀତଜ୍ଞ । ନାରଦୀୟ ସଙ୍ଗୀତ ପଦ୍ଧତି ନାମରେ ଖ୍ୟାତ 'ଘରାଣା' ଥିଲା ତାହାଙ୍କ ସ୍ୱତନ୍ତ୍ର ଗାୟନ ଶୈଳୀ । ଏହି ସଙ୍ଗୀତ (ଗୀତ, ବାଦ୍ୟ, ଓ ନୃତ୍ୟ)କୁ ସେ ନିଷ୍ଠୁରକୁ ଶାନ୍ତ କରିବା, ଖଳକୁ ଆୟତ୍ତ କରିବା, ନିରୀହକୁ ନିରାପଦ ରଖିବା, ବିଶ୍ୱରେ ଶାନ୍ତି ଓ ଶୃଙ୍ଖଳା ସ୍ଥାପନ କରିବା ଦିଗରେ ଉପାୟ ରୂପେ ପ୍ରୟୋଗ କରୁଥିଲେ । ଦେବଲୋକ ଓ ଭୂଲୋକରେ ମିତ୍ର କିମ୍ବା ଶତ୍ରୁ ଯେ କେହି ତାଙ୍କ ଦୃଷ୍ଟିରେ ପଡ଼ନ୍ତୁ ନା କାହିଁକି ତାଙ୍କ ସୁମଧୁର ସ୍ୱର ଝଙ୍କାର କର୍ଣ୍ଣରେ ପଡ଼ିବା ମାତ୍ରେ ଓ

ଦୀପ୍ତିମାନ ନୃତ୍ୟ ନେତ୍ରରେ ପଡ଼ନ୍ତେ ତାହାଙ୍କ ପ୍ରତ୍ୟୁତ୍ପନ୍ନମତିତ୍ୱ ଓ ଫନ୍ଦି ପାଖରେ ସେ ହାର ମାନିବାକୁ ବାଧ୍ୟ ହୁଏ, ସେ ହେଉଛନ୍ତି ଏକମାତ୍ର ଶିଳ୍ପୀ ଯେ କି ଏକାଦିକ୍ରମେ ଦେବ, ଦାନବ, ଯକ୍ଷ, ଗନ୍ଧର୍ବ, କିନ୍ନର ଓ ନର ସମସ୍ତଙ୍କ ବିଶ୍ୱାସର ପାତ୍ର । ସେ ସଫଳତାର ସହିତ ପ୍ରମାଣ କରିଛନ୍ତି ସଙ୍ଗୀତ ହିଁ ପ୍ରେମ ଓ ଏହା ଜୀବନକୁ ସଂସ୍ଥାପନ କରିଥାଏ । ଯୁଦ୍ଧଧ୍ୱାନ୍ତ ପୃଥିବୀକୁ ଶାନ୍ତ କରିବାକୁ ଏହାହିଁ ଏକମାତ୍ର ସହାୟ ।

ଜୀବନର ନ୍ୟାସୀ ଓ ସଂପଦ ରୂପେ ପ୍ରତୀତ ହେଉଥିବା ସଙ୍ଗୀତ ବିଭାଗ ଦେବଲୋକର ରାଜା ଦେବେନ୍ଦ୍ରଙ୍କ ତତ୍ତ୍ୱାବଧାନ ଓ ପୃଷ୍ଠ ପୋଷକତାରେ ରହିଥାଏ । ଗନ୍ଧର୍ବମାନେ, ଉଚ୍ଚ ପ୍ରତିଭାସଂପନ୍ନ ଏକ ଦରବାରୀ ଗାୟକ ଶ୍ରେଣୀ । ରମ୍ଭା, ମେନକା, ଉର୍ବଶୀ ଆଦି ରୂପସୀ ଓ ପ୍ରତିଭାମୟୀ ଅପ୍ସରାଗଣ ଅଟନ୍ତି ରାଜନର୍ତ୍ତକୀ । ସେମାନେ ଦେବତାମାନଙ୍କୁ ଆମୋଦ ପ୍ରମୋଦ କରିବା ସଙ୍ଗେ ସଙ୍ଗେ ଦେବତା ପ୍ରତି ଆସୁଥିବା ଆହ୍ୱାନର ମୁକାବିଲା କରିବାକୁ ସମର୍ଥ ସେମାନଙ୍କ ମନୋହାରୀ କଳା ମାଧ୍ୟମରେ । ମେନକା ରାଜର୍ଷି ଶକ୍ତିଶାଳୀ ବିଶ୍ୱାମିତ୍ରଙ୍କ ତପସ୍ୟା ଭଙ୍ଗ କରିଥିଲା । ଏହିପରି ଅନେକ ଦୃଷ୍ଟାନ୍ତ ରହିଛି ଯେଉଁଠାରେ ସଙ୍ଗୀତ ସୃଜନାତ୍ମକ ଓ ଉତ୍ପାଦନକ୍ଷମ କଳା ଭାବରେ ଉଭୟରୂପେ ବ୍ୟବହୃତ ହୋଇଛି ।

## ବିଜ୍ଞାନ ସମ୍ମତ ସଙ୍ଗୀତ ସମ୍ପର୍କରେ କ୍ଷୀଣ ଧାରଣା

ସୃଷ୍ଟି-କର୍ତ୍ତା ବ୍ରହ୍ମା ସେ ଯୁଗର ପ୍ରସିଦ୍ଧ କଳାକାର ଭରତ ମୁନିଙ୍କୁ ସଙ୍ଗୀତର ବିଜ୍ଞାନ ବିଷୟରେ କହିଲେ ଏବଂ ତାହାକୁ ମନୁଷ୍ୟ ସମାଜରେ ପ୍ରଚାର କରିବାକୁ ନିର୍ଦ୍ଦେଶ ଦେଲେ । ମାନବିକ ସଂସ୍କୃତି ସଂପର୍କରେ ଭାରତର ଧାରଣା ଶକ୍ତି ବା ସଂପଦରେ ଗଣା ହୁଏନାହିଁ । ବରଂ ଦେବୀ ସରସ୍ୱତୀ ଏକ ହାତରେ ବୀଣା ଓ ଅନ୍ୟ ହସ୍ତରେ ବେଦ ପୁସ୍ତକ ସଙ୍ଗୀତ ଓ ଜ୍ଞାନର ପ୍ରତୀକ ଭାବେ ଧାରଣ କରିଛନ୍ତି । କୁତ୍ସିତକୁ ଛାଡ଼ି ଉତ୍ତମକୁ ଗ୍ରହଣ କରୁଥିବା ହଂସ ତାଙ୍କର ବାହନ ଅର୍ଥାତ୍ ଚରିତ୍ର ରୂପୀ ରଥ ଓ ଶାନ୍ତି, ଭକ୍ତି ଏବଂ ପବିତ୍ରତାର ପ୍ରତୀକ ପଦ୍ମ, ଅର୍ଥାତ୍ ଜୀବନର ଭିତ୍ତି ହେଉଛି ତାଙ୍କର ଆସନ ।

ଖ୍ରୀଷ୍ଟପୂର୍ବ ୨୦୦ ଅବ୍ଦବେଳେ ଭରତ ମୁନି ବୈଜ୍ଞାନିକ ପ୍ରଣାଳୀରେ ଭାରତୀୟ ସଂଗୀତ ଓ ନୃତ୍ୟର ମୌଳିକ ପଦ୍ଧତିକୁ ତାହାଙ୍କ ମହାନ ଗ୍ରନ୍ଥ ଭରତ ନାଟ୍ୟ ଶାସ୍ତ୍ରରେ ଲିପିବଦ୍ଧ କରିଥିଲେ । ଗୀତ, ବାଦ୍ୟ ଓ ନୃତ୍ୟର ବିଭିନ୍ନ ବିଭାଗ ଯଥା—ଭାବ, ରାଗ, ଲୟ, ତାଳ, କାଳ ଓ ଅଭିନୟ, ଭଙ୍ଗିମା, ମୁଦ୍ରା, ଅଙ୍ଗ ବିନ୍ୟାସ, ପଦସଞ୍ଚାଳନ ଆଦି ପଦ୍ୟ, ଗଦ୍ୟ, କାବ୍ୟ, ନାଟକ, ଅଳଙ୍କାର, ନବରସର କ୍ରମ, ନାୟକ ନାୟିକାଙ୍କ ଶ୍ରେଣୀ ବିଭାଗ ଓ ଅନ୍ୟାନ୍ୟ ବହୁ ମୂଲ୍ୟବାନ ତଥ୍ୟ ସେ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ସଂଗୀତ ପୁଣି ମାର୍ଗ ସଙ୍ଗୀତ ଓ ଦେଶୀ ସଙ୍ଗୀତ ଭାବରେ ଦୁଇ ଶ୍ରେଣୀରେ ବିଭକ୍ତ । ଯାହା ଦେବଲୋକରେ ଚର୍ଚ୍ଚିତ ତାହା ମାର୍ଗ ସଙ୍ଗୀତ ଓ ଯାହା ଭୂଲୋକରେ ଆଲୋଚିତ ତାହା ଦେଶୀ ନାମରେ କଥିତ ।

ନାଦକୁ (୧) ପରା (୨) ପଶ୍ୟନ୍ତି (୩) ମଧ୍ୟମା ଓ (୪) ବୈଖାରୀ ଏହିପରି ଚାରିଗୋଟି ବିଭାଗରେ ବିଭକ୍ତ କରାଯାଇଥିବା ପରା ଓ ପଶ୍ୟନ୍ତି ନାଦ ହୃଦ୍‌ଗତ ଏବଂ ଯୋଗୀ ଓ ମୁନିମାନଙ୍କ ଅନ୍ତରରେ ଥାଏ । ମଧ୍ୟମା ବୁଦ୍ଧିଜୀବୀଙ୍କ ଦ୍ୱାରା ପ୍ରଯୁକ୍ତ ହୁଏ । କଣ୍ଠରୁ ଆରମ୍ଭ ହୋଇ କର୍ଣ୍ଣରେ ଶୁଣାଯାଉଥିବା ବୈଖାରୀ ନାଦ ଭାବ, ରାଗ ଓ ତାଳର ପ୍ରତୀକ । ବୈଖାରୀ ନାଦର ବିଳମ୍ବ, ମଧ୍ୟ, ଓ ଦ୍ରୁତ ଏହିପରି ତିନିଗୋଟି ସମୟ ମାପକ ଗତି ରହିଛି । ଏହି ବୈଖାରୀ ନାଦର ଶ୍ରୁତି ହେଉଛି ମାତା ଓ ଲୟ ହେଉଛି ପିତା । ଏହା ସୂକ୍ଷ୍ମ । "ଶ୍ରୁତି ସ୍ଥାନେ ସ୍ୱରଂ ବକ୍ତୁଂ ନାଦଂ ବ୍ରହ୍ମ ପିତା ତଥା ଜଳେଷୁ ଚରତଂ ମାର୍ଗଂ ମିନାନଂ ନୋପଲଭ୍ୟତେ" । ଜଳ ମଧ୍ୟରେ ଥିବା ମାଛକୁ ଚିହ୍ନଟ କରିବା ଯେପରି ସମ୍ଭବ ନୁହେଁ ସେହିପରି ନିର୍ଦ୍ଦିଷ୍ଟ ଶ୍ରୁତି ସ୍ଥାନରେ ସ୍ୱରକୁ ଚିହ୍ନିବା ବ୍ରହ୍ମାଙ୍କ ପକ୍ଷେ ସୁଦ୍ଧା ଅସମ୍ଭବ । ସେମାନଙ୍କ ଲିଖିତ ସଂଗୀତୋପନିଷଦ, ଭରତାଚାର୍ଯ୍ୟଙ୍କ ସଙ୍ଗୀତ ନୃତ୍ୟକାର ଶାରଙ୍ଗ ଦେବଙ୍କ ସଙ୍ଗୀତ ରତ୍ନାକର ଆଦି ସଙ୍ଗୀତ ବିଷୟର ମୁଖ୍ୟଗ୍ରନ୍ଥ । ସଙ୍ଗୀତ ବିଦ୍ୟାଦର୍ପଣ, ସଙ୍ଗୀତ ଦାମୋଦର, ସଙ୍ଗୀତ ନାରାୟଣ, ସଙ୍ଗୀତ କାମୋଦ, ସଙ୍ଗୀତ ପାରିଜାତ, ଅଭିନୟ ଚନ୍ଦ୍ରିକା ଆଦି ଏ ବିଷୟରେ ରଚିତ ଆଉ କେତେକ ମୂଲ୍ୟବାନ ପୁସ୍ତକ ।

ସମଗ୍ର ସଙ୍ଗୀତ ବିଜ୍ଞାନ ଷଡ଼ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ ଓ ନିଷାଦ—ଏହିପରି ସପ୍ତସ୍ୱର ଉପରେ ପ୍ରତିଷ୍ଠିତ । ଏହି ସପ୍ତସ୍ୱରରୁ ଦ୍ୱାବିଂଶତି ଶ୍ରୁତି ଉଦ୍ଭୁତ । ଏହି ସପ୍ତସ୍ୱରରୁ ପ୍ରାୟ ଅର୍ଦ୍ଧ ଲକ୍ଷ ରାଗ ରାଗିଣୀଙ୍କର (ପୂର୍ଣ୍ଣାଙ୍ଗ, ଷାଡ଼ବ, ଔଡବ, ସାଧବ ଓ ବକ୍ର) ଆବିଷ୍କାର ପରେ ବିଦ୍ୱାନ୍‌ମାନେ ଶେଷରେ ଏ ଗୁଡ଼ିକ ଅନନ୍ତ ବୋଲି ଘୋଷଣା କଲେ ।

ଅଦ୍ୟାବଧି ଭାରତରେ ଦୁଇଗୋଟି ମୌଳିକ ଶାସ୍ତ୍ରୀୟ ସଙ୍ଗୀତ ପଦ୍ଧତି ପ୍ରଚଳିତ । ଗୋଟିଏ ହିନ୍ଦୁସ୍ଥାନୀ ଓ ଅପରଟି ବହୁ ପ୍ରାଚୀନ କାଳରୁ ପ୍ରବର୍ତ୍ତିତ କର୍ଣ୍ଣାଟକୀ । ହିନ୍ଦୁସ୍ଥାନୀ ଉତ୍ତର ଭାରତରେ ଓ କର୍ଣ୍ଣାଟକୀ ଦକ୍ଷିଣ ଭାରତରେ ପ୍ରଭାବ ବିସ୍ତାର କରନ୍ତି । ଓଡ଼ିଶୀ ସଙ୍ଗୀତ ନିଜସ୍ୱ ଶୈଳୀରେ ସ୍ୱାଧୀନ । ପରଂପରା କ୍ରମେ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଆକାର ଘେନି ଲୋକ ସଙ୍ଗୀତ ପରିଦୃଷ୍ଟ ହୁଏ ।

ଭାରତ ଦେଶରେ ସାହିତ୍ୟକୁ ସଙ୍ଗୀତ ମାଧ୍ୟମରେ ରୂପାୟିତ କରିବା ଦିଗରେ ଭକ୍ତ ଜୟଦେବ ହେଉଛନ୍ତି ଅଗ୍ରଣୀ । ପୁରାଣ ଯୁଗର ମହାବୀର ଓ ଭକ୍ତ ହନୁମାନ, ଭକ୍ତ ଜୟଦେବ, ମୀରାଁ, ପୁରନ୍ଦର ବିଠଲ, ତ୍ୟାଗରାଜ ଦୀକ୍ଷିତାର, କବିସୂର୍ଯ୍ୟ ବଳଦେବ ରଥ, ଉପେନ୍ଦ୍ର ଭଞ୍ଜ ଓ ଗୋପାଳ କୃଷ୍ଣ ସଙ୍ଗୀତ ଓ ସାହିତ୍ୟ ମାଧ୍ୟମରେ ସିଦ୍ଧି ଲାଭ କରିଛନ୍ତି ।

ଏହି ରୂପେ ସଙ୍ଗୀତ ଶୂନ୍ୟ ଭିତରୁ ଯାଦୁ ସୃଷ୍ଟି କରିବାରେ ସଫଳକାମ ହୋଇଥିବା ଜଣାଯାଉଛି । ଅଦିନେ ଆକାଶରେ ମେଘ ସୃଷ୍ଟିକରି ବୃଷ୍ଟି କରାଯାଇପାରେ । ଲିଭିଲା ଦୀପକୁ ମଧ୍ୟ ଜଳାଇ ପାରେ । କଠିନ ଶିଳାକୁ ତରଳ କରି ପାଣିରେ ପରିଣତ କରିପାରେ । ଆକବରଙ୍କ ଦରବାରରେ ଅନନ୍ୟ ସଙ୍ଗୀତଜ୍ଞ ଅତ୍ୟନ୍ତ ଆଦରଣୀୟ ତାନ୍‌ସେନ ଆପଣା ସଙ୍ଗୀତଦ୍ୱାରା ପାଗଳା ହାତୀକୁ ସୁଦ୍ଧା ବାନ୍ଧି ପାରିଥିଲେ । ବଡ଼ ବଡ଼ ଡାକ୍ତର ଓ ହାକିମମାନଙ୍କ ଚିକିତ୍ସାପରେ ମଧ୍ୟ ହତାଶ ହୋଇ ଥିବା ଆକବରଙ୍କ କନ୍ୟାର ରୋଗକୁ ଦୀପକ

ରାଗିଣୀ ଗାନ ବଳରେ ସେ ଭଲ କରି ଦେଇଥିଲେ । ରାଜକନ୍ୟା ସମ୍ପୂର୍ଣ୍ଣ ସୁସ୍ଥ ହେଲା ବେଳକୁ ନିଜେ ତାନ୍‌ସେନ୍ ମଧ୍ୟ ଅଚେତ୍ ହୋଇଗଲେ । ପୁଣି ଯେତେବେଳେ ତାନି ମେଘ ମହ୍ଲାର ଗାନ କଲେ ସେତେବେଳେ ଯାଇ ତାନ୍‌ସେନଙ୍କର ମୋହ କଟିଲା । ସେହି ସମୟର ଜଣେ ପ୍ରସିଦ୍ଧ ଉତ୍କଳୀୟ ଗାୟକ ଗୋପାଳ ନାୟକ ଆପଣାର ସଙ୍ଗୀତ ଶୁଣାଇ ବନ୍ୟ ପଶୁମାନଙ୍କୁ ଏକାଠି କରୁଥିଲେ । ଆଜି ବି ଆମେ ଦେଖୁଛୁ ନାଗେଶ୍ୱର ବାଜା ଶୁଣି କ୍ରୁର ସର୍ପ ସୁଦ୍ଧା ମୋହିତ୍ ହେଉଛି । ଏଣୁ ସଙ୍ଗୀତ ଦ୍ୱାରା ଅଘଟନ ମଧ୍ୟ ଘଟିପାରେ ।

## ବାଦ୍ୟ

ବାଦ୍ୟରେ ୧୦୮ ଗୋଟି ତାଳ ରହିଛି । ଏହାର ସବିଶେଷ ବିବରଣୀ ଦେବା ସମୟ ସାପେକ୍ଷ ।

## ନୃତ୍ୟ

ନୃତ୍ୟ-କଳା ନଟରାଜ ଶିବ ଓ ପାର୍ବତୀଙ୍କ ଦ୍ୱାରା ଉଦ୍ଭାବିତ ହୋଇଛି । ଶିବ ତାଙ୍କ ପୁତ୍ର ଗଣନାୟକଙ୍କୁ ଏହି ନୃତ୍ୟକଳା ଶିକ୍ଷା ଦେଇ ଗଣଙ୍କ ମଧ୍ୟରେ ତାର ପ୍ରସାର ପାଇଁ ନିର୍ଦ୍ଦେଶ ଦେଲେ । ଗଣେଶ ଏହି କଳାକୁ ଦେବକନ୍ୟା ମଣିରମ୍ଭାକୁ ଶିକ୍ଷାଦେଲେ ଏବଂ ସେ ଏ କଳାକୁ ଭରତ ମୁନିଙ୍କୁ ଶିଖାଇଥିଲେ ।

ଭରତ ମୁନିଙ୍କ ଦ୍ୱାରା ସୂଚିତ ଓ ବିରଚିତ ନୃତ୍ୟକଳା "ଭରତ ନାଟ୍ୟମ୍" ନାମରେ କଥିତ । ସେ ନୃତ୍ୟକୁ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି । ଗୋଟିଏ ନୃତ୍ତ ଓ ଅନ୍ୟଟି ନୃତ୍ୟ । ଅଭିନୟ କଳା ଯେଉଁଟି କେବଳ ସଙ୍ଗୀତ ସହାୟତାରେ ଅନୁଷ୍ଠିତ ହୁଏ ତାହାକୁ "ନୃତ୍ତ" କୁହାଯାଏ । ନୃତ୍ୟରେ ଅଭିନୟ ମାଧ୍ୟମରେ ଭାବ ଓ ରସର ପ୍ରକାଶ ସଙ୍ଗୀତ ସହଯୋଗରେ ଅଙ୍ଗର ପରିଚାଳନା ଦ୍ୱାରା ସଂଘଟିତ ହୁଏ । ନୃତ୍ୟରେ ସାଧାରଣତଃ ନିମ୍ନ ଲିଖିତ ବିଭାଗ ଗୁଡ଼ିକ ଦେଖାଯାଇଥାଏ । (୧) ଆଙ୍ଗିକ, (୨) ବାଚିକ (୩) ଆହାର୍ଯ୍ୟ, ଓ (୪) ସାତ୍ତ୍ୱିକ । ଆଙ୍ଗିକ ୩ ପ୍ରକାର । ଯଥା—ଅଙ୍ଗ, ପ୍ରତ୍ୟଙ୍ଗ ଓ ଉପାଙ୍ଗ । ଅଙ୍ଗର ପ୍ରକାଶ ଘଟେ ମସ୍ତକ, ହସ୍ତ, ଗ୍ରୀବା, ବକ୍ଷ, ପାର୍ଶ୍ୱ, ଅଣ୍ଟା, ପିଠି ଓ ପାଦର ଚାଳନା ଦ୍ୱାର । ପ୍ରତ୍ୟଙ୍ଗର ପ୍ରକାଶ ହୁଏ ସ୍କନ୍ଧ, ବାହୁ, ଜଙ୍ଘ, ମଣିବନ୍ଧ, କହୁଣି, ଉଦର, ପକ୍ଷପଟ ଓ ଆଣ୍ଠୁର ଚାଳନା ଯୋଗେ ।

ଚକ୍ଷୁ, ଭ୍ରୂଲତା, ଚକ୍ଷୁ ଗୋଲକ, ଚିବୁକ, ନାସା, ଓଷ୍ଠ, ମୁଖବିବର ଜିହ୍ୱା, ଦନ୍ତ, ଓଷ୍ଠର ଅଗ୍ରଭାଗ, ମୁଖ, ବୃଦ୍ଧାଙ୍ଗୁଷ୍ଠ ଓ ଅଙ୍ଗୁଳିମାନଙ୍କର ଚାଳନା ଯୋଗେ ଉପାଙ୍ଗ ପ୍ରକାଶିତ ହୁଏ ।

୨ । ଯାହା ଶବ୍ଦ ମାଧ୍ୟମରେ ପ୍ରକାଶ କରାଯାଏ ତାହା ବାଚିକ ।

୩ । ପୋଷାକ ପରିଚ୍ଛଦ ଓ ପ୍ରସାଧନ ପରିପାଟୀ ହେଉଛି ଆହାର୍ଯ୍ୟ ।

୪ । ମନସ୍ତାତ୍ତ୍ୱିକ ଭାବର ପ୍ରକାଶ ଭଙ୍ଗୀ ଯଥା—ସ୍ୱର ପରିବର୍ତ୍ତନ, ରଙ୍ଗପରିବର୍ତ୍ତନ, ଆବେଗ ପ୍ରବଣ, ସ୍ପନ୍ଦନର ବେଗ ଓ ସ୍ପନ୍ଦନହୀନତା ଲୋତକସ୍ରାବ ଓ ମୂର୍ଚ୍ଛା ଆଦି ସାତ୍ତ୍ୱିକ ଭାବକୁ ବୁଝାଏ ।

ଶୃଙ୍ଗାରରେ ଦ୍ୱାଦଶ ଭାବ ଅଭିନୟ ଦ୍ୱାରା ଓ ନବରସ ଭାବ ଅନୁସାରେ ପ୍ରକଟନ କରାଯାଏ । ସେ ପୁଣି ନୃତ୍ୟବେଳେ ବିଭିନ୍ନ ମୁଦ୍ରା ଓ ଅନ୍ୟାନ୍ୟ ପଦ୍ଧତି ଅନୁକରଣ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ଯେଉଁ ନୃତ୍ୟ ଶିବ (ପୁରୁଷ)ଙ୍କ ଦ୍ୱାରା ପ୍ରଦର୍ଶିତ ତାହା ତାଣ୍ଡବ ଓ ଯାହା ପାର୍ବତୀ (ସ୍ତ୍ରୀ)ଙ୍କ ଦ୍ୱାରା ପ୍ରଦର୍ଶିତ ତାହା ଲାସ୍ୟ ନାମରେ କଥିତ ।

ସଙ୍ଗୀତ, ନୃତ୍ୟ ଓ ଅଭିନୟର ଏକ ମିଶ୍ର ରୂପକୁ, ମାର୍ଗନୃତ୍ୟ କୁହାଯାଏ ଏବଂ ଏହାକୁ ଭରତ ମୁନି ନଗରାଜଙ୍କ ସମ୍ମୁଖରେ ପ୍ରଦର୍ଶନ କରିଥିଲେ । ବ୍ରହ୍ମା ଓ ମହାଦେବ ମାର୍ଗ ନୃତ୍ୟରେ ପ୍ରବୀଣ; ମନୁଷ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ନୃତ୍ୟ ଦେଶୀ ନାମରେ ପ୍ରଚଳିତ ।

ଏହି ନୃତ୍ୟ କଳା ସ୍ମରଣାତୀତ କାଳରୁ ପ୍ରଚଳିତ ଥିଲା ଏବଂ ପାଣିନୀ ସ୍ୱୀକାର କରିଥିଲେ ଯେ ପ୍ରାୟ ଦୁଇହଜାର ବର୍ଷ ପୂର୍ବେ ଭାରତୀୟମାନେ ସଙ୍ଗୀତ ଓ ନୃତ୍ୟପ୍ରିୟ ଥିଲେ ।

ଶାସ୍ତ୍ରୀୟ ନୃତ୍ୟର ବିଭିନ୍ନ ପଦ୍ଧତି ଯଥା—ଭରତ ନାଟ୍ୟମ୍, କଥକ, କଥକାଳୀ, ମଣିପୁରୀ, ଓଡ଼ିଶୀ, ଛଉ ଓ କୁଚିପୁଡ଼ି ବ୍ୟତୀତ ବିଭିନ୍ନ ପ୍ରକାରର ଲୋକନୃତ୍ୟ ବିଭିନ୍ନ ଜାତି ମଧ୍ୟରେ ଅଭ୍ୟାସ ପରଂପରା ଚଳଣି ଓ ପରିବେଷ୍ଟନୀ ଅନୁସାରେ ପ୍ରଚଳିତ ଅଛି ।

ଏକ ଭିନ୍ନ ଢଙ୍ଗର ନୃତ୍ୟ ଆଦିବାସୀମାନଙ୍କ ମଧ୍ୟରେ ଦେଖାଯାଏ । ତାହା ପ୍ରାକୃତିକ, ସ୍ୱତଃ ପ୍ରବୃତ୍ତ ଓ ଆମୋଦ ଦାୟକ ।

ସଙ୍ଗୀତର ଆବଶ୍ୟକ ଏକ ମୁକ୍ତ ବାତାବରଣ, ଶାନ୍ତିପୂର୍ଣ୍ଣ ଉଦ୍ୟମ ଓ ସ୍ୱାସ୍ଥ୍ୟକର ପରିବେଶ । ଏଥିରେ କୌଣସି ଜାତି ବା ପଦବୀର ସ୍ଥାନ ନାହିଁ । ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତଙ୍କ ପ୍ରତି ସେ ସ୍ନେହଶୀଳ । ଏହା ଯୋଗ୍ୟ ବ୍ୟକ୍ତିଙ୍କୁ ଯଥାବିଧି ଅର୍ପଣ କରେ । ଏହା ସ୍ୱର୍ଗୀୟ ଓ ସେଇଥିପାଇଁ ପୃଥିବୀରେ ସମାଜବାଦୀ ସମାଜ ଗଠନ ପାଇଁ ଅନନ୍ୟ ।

ଯେ ସ୍ପଷ୍ଟ ଭାବରେ କହିପାରେ ଓ ଉତ୍ତମ ରୂପେ ନୃତ୍ୟ କରିପାରେ, ସେ ଉତ୍କୃଷ୍ଟ କଳାକାର ଭାବରେ ଗଣ୍ୟହୁଏ । ଏପରିକି ଆମେ ଭାଷଣ ପ୍ରସଙ୍ଗରେ ସଙ୍ଗୀତ, ବକ୍ତୃତା ପ୍ରଦାନରେ ମାଧୁରୀ ଏବଂ ପଦ ପାତରେ ତାଳର ପ୍ରୟୋଗ ଦେଖିବାକୁ ପାଉ ।

ସଙ୍ଗୀତ ସ୍ୱର୍ଗୀୟ ଓ ଐଶ୍ୱରୀକ । ତେଣୁ ସମଗ୍ର ପୃଥିବୀରେ ଜାତି ଶ୍ରେଣୀ ନିର୍ବିଶେଷରେ ଓ ବିଶ୍ୱଶାନ୍ତି ପ୍ରତିଷ୍ଠା କରିବା ପାଇଁ ଏହା ସର୍ବୋତ୍କୃଷ୍ଟ ମାଧ୍ୟମ ।

ମାର୍ଫତ୍— ଅଧ୍ୟାପକ ହରିହର କାନୁନଗୋ
ପାରଳାଖେମୁଣ୍ଡି କଲେଜ,
ପାରଳାଖେମୁଣ୍ଡି, ଗଞ୍ଜାମ
୭୬୧୨୦୦




ନୂଆଦିଲ୍ଲୀରେ ଗଣତନ୍ତ୍ର ଦିବସ ପାଳନ . . .

REPUBLIC DAY CELEBRATION AT NEW DELHI . .



# ମୃତ୍ୟୁଞ୍ଜୟୀ ଇନ୍ଦିରାଜୀ

ଶ୍ରୀ କାର୍ତ୍ତିକେଶ୍ୱର ପାତ୍ର

"ମୁଁ ସବୁଦିନେ ଏକ ମାଟି ଆଉଁଷିଲ୍ଲ ମଣିଷ । ବରାବରକୁ ମାଟି"ଆଉଁଷିଆ ସ୍ୱଭାବ ମୋର । ପିଲାଦିନେ କାହାଠୁ କେବେ ଜହ୍ନମାମୁଁର ଶୋଭା ଶୁଣିଲେ, ଓଲଟି ମୁଁ କହିଥାଏ, କିଓ ପୃଥିବୀ ମା କେଉଁ ଦୋଷ କଲାକି ? ଇଏ ବି ତ ବେଶ ସୁନ୍ଦର ଜାଗାଟିଏ" ।

କଥା କେ ପ୍ରୟାତଃ ଇନ୍ଦିରାଙ୍କର ମର୍ମବାଣୀ । ବାସ୍ତବିକ ମା'କୁ ଭଲ ପାଇବା ଏବଂ ଭଲ ପାଇବା ମାଟି ମା–ଜନ୍ମ ଭୂମିକୁ ଏକ ଗୌରବ ଦୀପ୍ତ ମାନବ ଚେତନାର ସ୍ୱଭାବ । ଏହି ସ୍ୱଭାବର ସହାଜାତ ପରିପ୍ରକାଶ ହିଁ ଇନ୍ଦିରା ଗାନ୍ଧୀଙ୍କ ତମାମ ଜୀବନରେ ପ୍ରକଟିତ ହୋଇ ପାରିଛି । ତେଣୁ ସେ କେବଳ ବଂଶଗତ ଉଜ୍ଜ୍ୱଳ ପରମ୍ପରାର ଦାୟାଦ ଭାବରେ ନୁହିଁନ୍ତି, ଭାରତୀୟ କୃଷ୍ଟି ଓ ଐତିହ୍ୟର ଉଦ୍‌ଭାସିନୀ ନାରୀ ଭାବରେ ସୁବିଦିତା ।

କହିବା ବାହୁଲ୍ୟ ଭାରତୀୟ ଚିନ୍ତାଧାରାର ଉଦାର ଧର୍ମ ନିରପେକ୍ଷତା, ମହାନ୍ ସାର୍ବଭୌମତା ଅତ୍ୟନ୍ତ ସାବଲୀଳ ଭାବରେ ସ୍ୱର୍ଗତାଃ ଇନ୍ଦିରାଙ୍କ ଜୀବନରେ ସ୍ଫୁର୍ତ୍ତ ହୋଇ ପାରିଥିଲା । ଯଦ୍ୱାରା ଏବର ଚିନ୍ତା ବିଦଗ୍ଧ ମଣିଷ ଅନାୟାସରେ ସ୍ୱୀକାର କରୁଛି କି, ଜୀବିତା ଇନ୍ଦିରାଙ୍କ ଅପେକ୍ଷା ପ୍ରୟତଃ ଇନ୍ଦିରା ସହସ୍ର ଗୁଣ ଶକ୍ତିମୟୀ । ଯୁଗେ ଯୁଗେ ଭାରତ ବର୍ଷ ଅଧ୍ୟାତ୍ମ ଚେତନା ଓ ତ୍ୟାଗର ମହିମାରେ ଦୀପ୍ତିମନ୍ତ ହୋଇ ଆସିଛି । ପୁରାଣ ଯୁଗରେ ଦଧିଚିଙ୍କ ଇନ୍ଦ୍ରଙ୍କୁ ଅସ୍ଥିଦାନ, ଦାତାକର୍ଣ୍ଣଙ୍କର ପୁତ୍ରକୁ ବ୍ରାହ୍ମଣର ଖାଦ୍ୟ ହିସାବରେ ଦାନ ତଥା ନିଜର କବଚ କୁଣ୍ଡଳ ମୃତ୍ୟୁ କାମୀ ଶତ୍ରୁ ଅର୍ଜୁନଙ୍କୁ ଦାନ, ଦାନବୀର ହରିଶ୍ଚନ୍ଦ୍ରଙ୍କ ସର୍ବସ୍ୱ ଦାନ ପରେ ଦକ୍ଷିଣା ଦାନ ପାଇଁ ନଜର ସ୍ତ୍ରୀ, ପୁତ୍ର ଓ ନିଜକୁ ବିକ୍ରୟ କରିବା ପୃଥିବୀ ଇତିହାସରେ ଅନନ୍ୟ, ଅନବଦ୍ୟ ।

ଜାତିର ପିତା ମହାତ୍ମା ଗାନ୍ଧୀ ଭାରତବର୍ଷରେ ଜନ୍ମ-ଗ୍ରହଣ କରିଥିଲେ ମଧ୍ୟ ପୃଥିବୀର ବହୁ ମହାପୁରୁଷମାନଙ୍କ ମଧ୍ୟରେ ଥିଲେ ଏକମାତ୍ର ମହାତ୍ମା । ସେ ଭାରତ ମାଟିରେ ସବୁ ଧର୍ମ ସବୁ ଜାତି ଓ ସବୁ ସଂପ୍ରଦାୟର ଲୋକଙ୍କୁ ନିଜର ବୋଲି ଭାବୁଥିଲେ । ଭାରତ ବର୍ଷର ସ୍ୱାଧୀନତା ସମୟରେ ଭାରତ, ପାକିସ୍ଥାନ ଖଣ୍ଡ ଖଣ୍ଡ ହୋଇଗଲା । ଏଥିରେ ମହାତ୍ମା-ଗାନ୍ଧୀ ଅତ୍ୟନ୍ତ ମର୍ମାହତ ହୋଇ ପଡିଲେ ଓ ଏହାକୁ ଏକ କରିବାକୁ ଚାହୁଁଥିଲେ । ଏହି ଅଖଣ୍ଡ ଭାରତର ଏକାତ୍ମବୋଧ ତାଙ୍କର କାଳ ହୋଇଗଲା । ସେ ଆତତାୟୀର ଗୁଳିଗ୍ରେଟରେ ପ୍ରାଣ ହରାଇଥିଲେ ।

ଠିକ୍ ସେହିଭଳି ଭାବରେ ଗତ ଅକ୍ଟୋବର ୩୧ ତାରିଖ ଦିନ ବିଶ୍ୱମାନବ ହୃଦୟର ମହାନ ନେତ୍ରୀ ସ୍ୱର୍ଗତାଃ ଇନ୍ଦିରା-ଗାନ୍ଧୀ ଭାରତ ବର୍ଷର ଅଖଣ୍ଡତା ଓ ଏକାତ୍ମବୋଧ ପାଇଁ ଚରମ ବିଶ୍ୱାସଘାତକତାର ଶୀକାର ହୋଇଛନ୍ତି । ବିଶ୍ୱାସର ଅଯୋଗ୍ୟ ଆତତାୟୀ ମଣିଷକୁ ବିଶ୍ୱାସ କରି ଜୀବନ ଦାନ କରି ବିଶ୍ୱାସର ଜୋର ପ୍ରମାଣ କରି ଯାଇଛନ୍ତି । ତାଙ୍କଠାରେ ବିପଦ ମଧ୍ୟରେ ଭୟ ନୁହେଁକି ବର୍ବରତାର ଉପର ଅବିଶ୍ୱାସ ନୁହେଁ । ବିପଦକୁ ଆଖିଆଗରେ ରଖି ସେ କେବେ ଦୃଢ କଠିନ ସିଦ୍ଧାନ୍ତ ନେବାକୁ ପଛାଇ ନାହାନ୍ତି । ଯେଉଁଦିନ ସେ ପଞ୍ଜାବର ସ୍ୱର୍ଣ୍ଣ ମନ୍ଦିରକୁ ସୈନ୍ୟ ବାହିନୀ ପ୍ରବେଶ କରାଇବାର ସିଦ୍ଧାନ୍ତ ନେଲେ ସେ ସେଇଦିନ ଜାଣିଜାଣ ଦେଶ ଓ ଜାତିର ଅଖଣ୍ଡତା ପାଇଁ ମୃତ୍ୟୁର ପରୱାନାରେ ଦସ୍ତଖତ ଦେଇଛନ୍ତି, ଏ କଥା ସର୍ବବାଦୀ ସମ୍ମତ"

ଏଥିପାଇଁ କେବଳ ଇନ୍ଦିରାଜୀଙ୍କୁ ସର୍ବଭାରତୀୟ ନେତ୍ରୀ କହିଲେ ତାଙ୍କୁ ତାଙ୍କର ଯଥାର୍ଥ ସ୍ଥାନ ଦିଆଯାଇ ପାରିବ ନାହିଁ, ସେ ହେଉଛନ୍ତି ସମଗ୍ର ପୃଥିବୀର ରାଜନୀତି ଦର୍ଶନରେ ଏକମାତ୍ର ମହାନ ନେତ୍ରୀ । ଯେଉଁଥି ପାଇଁକି ତାଙ୍କର ଅକାଳ ବିୟୋଗରେ ପୃଥିବୀର ସମସ୍ତ ପ୍ରାନ୍ତରେ ଯୁଦ୍ଧ ଭୟରୁ ନିରାପଦରେ କୋଟି କୋଟି ଅସହାୟ ମଣସ ଅଶ୍ରୁ ସମ୍ବରଣ କରିପାରି ନାହାନ୍ତି ।

ଭାରତ ମାଟିରେ 'ଶରଣାଗତ କିଙ୍କର ଭୀତମନେ' ଉକ୍ତିର ସତ୍ୟତା ପ୍ରତିପାଦନ କରି ଯାଇଥିଲେ ରାଜା ଉଶୀନର କପୋତ ପକ୍ଷୀକୁ ରକ୍ଷା କରିବାକୁ ଯାଇ ନିଜ ଦେହରୁ ମାଂସ କାଟି ସଞ୍ଚାଣକୁ ଦେଇଥିଲେ । ଠିକ୍ ସେଇଭଳି ଭାବରେ ବିନୀତ ବଙ୍ଗଳା ଦେଶର କୋଟିଏ ଶରଣାର୍ଥୀଙ୍କୁ ଗୋଟିଏ ବର୍ଷ ଭାରତରେ ଥଇଥାନ ଦେଇ ପୁଣି ସେମାନଙ୍କ ଦେଶକୁ

ଫେଟାଇ ଦେଇଥିଲେ । ବିଜେତାର ଗର୍ବ ନେଇ ମାନବିକତାର ଅହଂକାର ସେ କେବେ ହେଲେ କରି ନାହାନ୍ତି—ଯାହାର ଆଦର୍ଶ ସମଗ୍ର ବିଶ୍ୱରେ ବିରଳ ।

ତାଙ୍କର ସମସ୍ତ ଜୀବନଟା ଚ୍ୟାଲେଞ୍ଜ, ଖାଲି ଚ୍ୟାଲେଞ୍ଜ । କେଉଁଟା ବଡ଼, କେଉଁଟା ଛୋଟ, ତଫାତ୍ କେବଳ ଏତିକି ପ୍ରାୟ ନିରବଚ୍ଛିନ୍ନ ଭାବରେ ଗୋଟିକ ପରେ ଗୋଟିଏ ଚ୍ୟାଲେଞ୍ଜ ଭିତର ଦେଇ ସେ ନିଜକୁ ଆଗେଇ ନେଇଥିଲେ । ଯାହା ତାଙ୍କ ଜୀବନର ସମସ୍ତ ସତ୍ୟଗୁଡ଼ିକ ମଧ୍ୟରୁ ସବୁଠାରୁ ଅକାଟ୍ୟ । ଏହା ସେ ଅତି ସୁସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି । ଯୌବନରେ ପତି ପରମଗୁରୁ ତାଙ୍କୁ ରାଜନୀତି ଭିତରକୁ ଠେଲି ନେଇଥିଲେ । ଜୀବନରେ ସ୍ନେହଶୀଳ ରାଜନୈତିକ କବଚ ପରମ ନମସ୍ୟ ଥିଲେ ତାଙ୍କର ପିତୃଦେବ । କ୍ଷମତାର ଶୀର୍ଷ ସୀମାରେ ସୀମାହୀନ ଥିବାବେଳେ କାର୍ତ୍ତିକେୟ ପ୍ରତିମ ପୁତ୍ର ସଞ୍ଜୟକୁ ହରାଇ ସେ କେବେ ଭାଙ୍ଗି ପଡ଼ି ନ ଥିଲେ । ୧୯୭୭ ନିର୍ବାଚନର ପରାଜୟ ପରେ ତାଙ୍କ ଉପରେ ନିର୍ମମ ଭାବେ ଅଭିଯୋଗ ଆରୋପ କରି ତାଙ୍କୁ କାଠଗଡ଼ାର ଆସାମୀ କରି କ୍ଷତବିକ୍ଷତ କରିବାକୁ ଚେଷ୍ଟା କରାଯାଇଛି । ହେଲେ ପ୍ରାଣର ଦେଶବାସୀଙ୍କର ପ୍ରତ୍ୟାଖ୍ୟାନକୁ ନିଜର ପରାଜୟ ଭାବି ନାହାନ୍ତି—ପୁଣି ଲୋକଙ୍କ ପାଖରେ ନିଜକୁ ନେଇ ଛିଡ଼ା କରାଇଛନ୍ତି ।

ଇଟା ମାରୁ ବା ଯାହା କରୁ ଏଥର ମୋର ବାହାରି ପଡ଼ିବା ଦରକାର । ଜନସାଧାରଣଙ୍କୁ ଯାଇ ପଚାରିବା ଦରକାର ସେମାନେ ମୋ ବିରୁଦ୍ଧରେ ଗଲେ କାହିଁକି ? ସବୁ ଚ୍ୟାଲେଞ୍ଜ ଭିତରେ ସଫଳତା ଓ ଅସଫଳତା ଆସିଛି । କିନ୍ତୁ ସଫଳତାର ସଂଖ୍ୟା ଅଧିକ । ସର୍ବଶେଷରେ ମୃତ୍ୟୁ ସହିତ ଚ୍ୟାଲେଞ୍ଜରେ ସେ ମରଣ ବିଜୟୀ ହୋଇ ପାରିଛନ୍ତି । ରିଭଲଭର ଓ ଷ୍ଟେନ୍‌ଗନ୍‌ର ସମସ୍ତ ଗୁଳି ଶେଷ ହୋଇଯିବା ପରେ, ସେମାନେ ନିସ୍ତେଜ ଓ ନିଃସହାୟ ହୋଇଯିବା ପରେ ମଧ୍ୟ ଇନ୍ଦିରାଜୀଙ୍କର ଜୀବନଦୀପ ଲିଭି ନ ଥିଲା—ଠିକ୍ ମହାଭାରତର ଭୀଷ୍ମ ଦେବଙ୍କ ପରି । ସେ ଇଚ୍ଛା କରି ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସେ କାଳଜୟୀ, ମୃତ୍ୟୁଞ୍ଜୟୀ, ମହିୟସୀ, ମା ସର୍ବଂସହା ଧରିତ୍ରୀ ।



ବାଲେଶ୍ୱର ଭୋଗରାଇରେ ପ୍ରଧାନମନ୍ତ୍ରୀ ଶ୍ରୀ ଗାନ୍ଧୀ

# ଜୀବନାଭିମୁଖୀ ପ୍ରୌଢ଼ ଶିକ୍ଷା

ଡକ୍ଟର ଅମୂଲ୍ୟ ମହାପାତ୍ର

ଆମର ବଞ୍ଚିବା ପାଇଁ ଖାଦ୍ୟ ଯେପରି ଆବଶ୍ୟକ, ସେହିପରି ଜଣେ ସୁନାଗରିକ ହେବା ପାଇଁ ଶିକ୍ଷା ସେହିପରି ଆବଶ୍ୟକ । ଶିକ୍ଷା ବିହୀନ ମାନବ ପଶୁପରି ଜୀବନ ଧାରଣ କରେ, ଶିକ୍ଷିତ ବ୍ୟକ୍ତି ତାର ସମସ୍ତ କାର୍ଯ୍ୟ ସୁରୁଖୁ ଭାବରେ କରିଥାଏ । ତେଣୁ ସେ ସମାଜରେ ଆଦୃତ ହୁଏ । ତାର ଭଲ ମନ୍ଦ ବିଚାର କରିବାର ଶକ୍ତି ଶିକ୍ଷା ଲାଭ ଦ୍ୱାରା ହୋଇଥାଏ । ନିଜର ଉନ୍ନତି ପାଇଁ ସେ ଯେପରି ସହାୟ ହୋଇଥାଏ, ଠିକ୍ ସେହିପରି ଅନ୍ୟମାନଙ୍କର ମଙ୍ଗଳ ପାଇଁ ସେ କାର୍ଯ୍ୟ କରିଥାଏ । ଏହି ଶିକ୍ଷା, ଜୀବନର ସମସ୍ତ ଅନ୍ଧକାର ଓ ଅଜ୍ଞାନତାକୁ ଦୂର କରିଦେଇଥାଏ । ଏ ଦେଶର ପରିଚାଳନା କ୍ଷେତ୍ରରେ ଓ ସାମୁହିକ ଉନ୍ନତି ପଥରେ କେବଳ ଶିକ୍ଷିତ ବ୍ୟକ୍ତିମାନେ ସକ୍ରିୟ ସାହାଯ୍ୟ କରିଥାନ୍ତି । ଅଶିକ୍ଷିତ ବ୍ୟକ୍ତିମାନେ ଦେଶର ତଥା ବ୍ୟକ୍ତି ବିଶେଷର ବିକାଶ ପଥରେ ଅନ୍ତରାୟ ସୃଷ୍ଟି କରିଥାନ୍ତି । ତେଣୁ ଶିକ୍ଷାର ଆବଶ୍ୟକତା ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ବିଶେଷ ଆବଶ୍ୟକ ।

ଆମଦେଶ ସ୍ୱାଧୀନତା ଲଭକଲା । ସେହି ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍କାଳରେ ଦେଶର ପ୍ରତ୍ୟେକ ନାଗରିକଙ୍କୁ ସ୍ୱାକ୍ଷର କରିବା ଥିଲା ଏକ ଜାତୀୟ ସଂକଳ୍ପ । କିନ୍ତୁ ଏ ଯାବତ୍ ଆମେ ସେହି ଇପ୍‌ସିତ ଲକ୍ଷ୍ୟରେ ପହଞ୍ଚି ପାରିନାହୁଁ । ପୃଥିବୀର ଶିକ୍ଷା ଦିଗରେ ଅନଗ୍ରସର ରାଷ୍ଟ୍ରମାନଙ୍କ ମଧ୍ୟରେ ଆମ ଦେଶ ଅନ୍ୟତମ । ପ୍ରତ୍ୟେକ ନାଗରିକଙ୍କୁ ସ୍ୱାକ୍ଷର କରିବାର ସଂକଳ୍ପ ନେଇ କେନ୍ଦ୍ର ଓ ରାଜ୍ୟରେ ପ୍ରୌଢ଼ ଶିକ୍ଷା ବିଭାଗମାନ ଖୋଲଯାଉଛି । ବର୍ତ୍ତମାନ ପନ୍ଦରରୁ ପଞ୍ଚତ୍ରିଂଶ ବର୍ଷ ବୟସ ନିରକ୍ଷର ସଂଖ୍ୟା ଆମ ଦେଶରେ ଏକ କୋଟିରୁ ଅଧିକ ହେବେ । ଏହି ନିରକ୍ଷର ବ୍ୟକ୍ତିମାନେ ସମାଜରେ ଅବହେଳିତ ଭାବରେ ରହୁଛନ୍ତି । ସେମାନଙ୍କର ନିଜର ଉନ୍ନତି ମଧ୍ୟ ହୋଇପାରୁ ନାହିଁ । ଏପରିସ୍ଥଳେ ଦେଶର ସାମୁହିକ ବିକାଶ ସଂଭବ ହୋଇପାରୁନି । ତେଣୁ ଆମ ସରକାର ଶିକ୍ଷାର ପ୍ରସାର ନିମନ୍ତେ ଓ ପ୍ରୌଢ଼ ଶିକ୍ଷାର ସଫଳତା ଉଦ୍ଦେଶ୍ୟରେ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମରେ ତାହାକୁ ଗୁରୁତ୍ୱ ଦେଇଛନ୍ତି । ସରକାରୀ ଉଦ୍ୟମ ବ୍ୟତୀତ ବେସରକାରୀ ଉଦ୍ୟମ ଏଥିପାଇଁ ଅଧିକ ଆବଶ୍ୟକ ହୋଇଛି । ଅଧିକ ପ୍ରୌଢ଼ଶିକ୍ଷା କେନ୍ଦ୍ରମାନ ଖୋଲିବା ପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି ।

ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ବିଶେଷ ସଫଳତାର ସହିତ ଅଗ୍ରସର ହୋଇ ପାରୁନି । ଅଥଚ ସରକାର ଏଥିନିମନ୍ତେ ଅଜସ୍ର ଅର୍ଥବ୍ୟୟ କରୁଛନ୍ତି । ଏଠାରେ ମନରେ ପ୍ରଶ୍ନ ଆସେ ଯେ ଏହି ନୂତନ ଯୋଜନାର ସଫଳ ରୂପାୟନ ପାଇଁ କେଉଁଠାରେ ଦୋଷତ୍ରୁଟି ରହି ଯାଉଛି । ଏହି ପ୍ରୌଢ଼ଶିକ୍ଷା ନିମନ୍ତେ ଯେଉଁ ପାଠ୍ୟକ୍ରମ ତିଆରି ହେଉଛି ତାହା କ'ଣ ବିଶେଷ ଉପଯୋଗୀ ହୋଇପାରୁନି କିମ୍ବା ଏହି ଶିକ୍ଷା ଦେବାର ପ୍ରଣାଳୀରେ ତ୍ରୁଟି ରହି ଯାଉଛି ଅଥବା ସେହି ଅଶିକ୍ଷିତ ପ୍ରୌଢ଼ ଓ ପ୍ରୌଢ଼ାମାନଙ୍କୁ ଉପଯୁକ୍ତ ପ୍ରେରଣା ଓ ପ୍ରଚେଷ୍ଟାର ଅଭାବ ରହି ଯାଉଛି ?

ମୋର ମନେ ହୁଏ ଉପରୋକ୍ତ କାରଣଗୁଡ଼ିକ କେତେକ ପରିମାଣରେ ପ୍ରୌଢ଼ଶିକ୍ଷାର ଉନ୍ନତି ପଥରେ ଅନ୍ତରାୟ ସୃଷ୍ଟି କରୁଛି । ସେଗୁଡ଼ିକ ଯଦି ଆମେ ପର୍ଯ୍ୟାଲୋଚନା କରିବୁ ତାହେଲେ ଦେଖିବାକୁ ପାଇବୁ ଯେ ପ୍ରୌଢ଼ଶିକ୍ଷାର ପାଠ୍ୟକ୍ରମ ମୁଖ୍ୟତଃ ଜୀବନାଭିମୁଖୀ ହୋଇ ପାରୁ ନାହିଁ । ଯେପରି ଆଜିର ଶିକ୍ଷାକ୍ଷେତ୍ରରେ ମଧ୍ୟ ସେହି ଏକ ପ୍ରକାର ସମସ୍ୟା ଆସି ମୁଣ୍ଡ ଟେକୁଛି । ପ୍ରୌଢ଼ଶିକ୍ଷା ଯଦି ଏକ ପ୍ରକାର ପୋଥି ବାଇଗଣଭାବରେ ପରିଣତ ହେବ ଏବଂ ତାହାର ଆବଶ୍ୟକତା ଯଦି ଶିକ୍ଷିତ ବ୍ୟକ୍ତିମାନେ ଜୀବନରେ ଉପଲବ୍ଧି କରି ନ ପାରିବେ ତାହେଲେ କେବଳ ସଂଖ୍ୟାଗତ ଶିକ୍ଷିତ ବ୍ୟକ୍ତିର ବୃଦ୍ଧି ଦେଶର ପ୍ରଗତି କ୍ଷେତ୍ରରେ ସହାୟ ହୋଇ ପାରିବ ନାହିଁ । କେବଳ ସେମାନଙ୍କୁ ପୌଢ଼ଶିକ୍ଷା କେନ୍ଦ୍ରକୁ ଡାକି ନେଇ ଚାଟଶାଳୀର ପିଲାମାନଙ୍କୁ ଅ, ଆ, କ, ଖ, ଓ ଦୁଇକେ ଦୁଇ, ଦୁଇ ଦୁଗୁଣେ ଚାରି ଘୋଷାଇଲା ପରି ଅଥବା ଶୁଆପକ୍ଷୀକୁ ରାମନାମ ଘୋଷାଇଲାପରି ଶିକ୍ଷା ଦେଲେ ତାହାହେଲେ ସେମାନଙ୍କର ଆନ୍ତରିକତା ଶିକ୍ଷାପ୍ରତି ରହିବନାହିଁ ।

ପାଠପଢ଼ି ସେମାନେ କଣ କରିବେ ? ତାହା ସେମାନଙ୍କର କଣ ଦରକାରରେ ଆସିବ ? ଜୀବନ ଆଚରଣ ନିମନ୍ତେ, ସେ ଶିକ୍ଷାର କେତେଦୂର ଆବଶ୍ୟକତା ରହିଛି; ଏ ସମସ୍ତ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଯଦି ସେହି ମର୍ମରେ

ଶିକ୍ଷାକୁ ଜୀବନ ଓ ଆବଶ୍ୟକତା-ଭିତ୍ତିକ କରାଯାଇ ପାରିବ ତାହେଲେ ସେମାନେ ଏହାର ମୂଲ୍ୟ ବୁଝିବେ ଓ ବହୁ ସଂଖ୍ୟାରେ ଶିକ୍ଷାଲାଭ ପାଇଁ ଆଗେଇ ଆସିବେ । ଏଥି ନିମନ୍ତେ ପ୍ରୌଢ଼ ଶିକ୍ଷା ପାଠ୍ୟକ୍ରମର ପରିବର୍ତ୍ତନ ଶିକ୍ଷାଦାନର ପ୍ରଣାଳୀର ସଂଶୋଧନ ମଧ୍ୟ ଆବଶ୍ୟକ । ଏଠାରେ କରାଯାଇ ପାରେ ଯେ ଯେଉଁମାନେ ଶିକ୍ଷାଦାନ କରିବେ ସେମାନେ ଯେପରି ଆଗ୍ରହର ସହିତ ଯଥାସାଧ୍ୟ ମନୋବୈଜ୍ଞାନିକ ଢଙ୍ଗରେ ସେବାଭାବ ନେଇ ଅଗ୍ରସର ହେବା ଦରକାର । ଶିକ୍ଷକ-ମାନେ ଆଗ୍ରହର ସହିତ ଶିକ୍ଷାଦାନ ନକଲେ ଅଶିକ୍ଷିତ ନିରକ୍ଷର ବ୍ୟକ୍ତିମାନଙ୍କର ଆନ୍ତରିକତା ଓ ବୋଧ ଗମ୍ୟତାର ବିକାଶ-ଲାଭ କରି ପାରିବ ନାହିଁ । ଶିକ୍ଷାଦାନକାର୍ଯ୍ୟ ଜୀବିକା ଉପାର୍ଜନର ଏକ ସାଧନ ବୋଲି ଚିନ୍ତା କରୁଥିବାରୁ ସେଥିରେ କୌଣସି ଆଦର୍ଶ ଓ ସଫଳତା ରହୁ ନାହିଁ । ଏହିକାର୍ଯ୍ୟ ପାଇଁ ଉପଯୁକ୍ତ ଲୋକଙ୍କୁ ତାଲିମ ଦେଇ ନିଯୁକ୍ତି କରିବାକୁ ହେବ ।

ଶିକ୍ଷାର ପାଠ୍ୟକ୍ରମ ମଧ୍ୟରେ ଲୋକଗୀତ, ଲୋକକଥା, କାହାଣୀ ଦେଶବିଦେଶର ଖବର ଏବଂ ଜୀବନାଭିମୁଖୀ ଶିକ୍ଷା ଦେବା ଆବଶ୍ୟକ । ସେମାନଙ୍କର ଦୈନନ୍ଦିନ ଜୀବନ ଏ ଆବଶ୍ୟକତା ପ୍ରତି ଦୃଷ୍ଟି ରଖି ପାଠ୍ୟକ୍ରମ ପ୍ରସ୍ତୁତ କରିବାକୁ ହେବ । ଶିକ୍ଷାଦାନ ସେମାନଙ୍କର ନିଜ ଭାଷାରେ ହେଲେ ତାହା ବିଶେଷ ଗ୍ରହଣୀୟ ହେବ । ଧାର୍ମିକ ଚିନ୍ତାଧାରା ଓ ପୁରାଣର ଗଳ୍ପ ତଥା କାହାଣୀ ପ୍ରତି ପ୍ରୌଢ଼ ଓ ପ୍ରୌଢ଼ାମାନେ ବିଶେଷ ଆକର୍ଷିତ ହୋଇଥାନ୍ତି । ତେଣୁ ପାଠ୍ୟକ୍ରମରେ ସେ ପ୍ରକାର ବିଷୟ ବସ୍ତୁକୁ ଅଗ୍ରାଧିକାର ଦେବା ଦରକାର । ପାଠପଢ଼ା ଯେପରି ସେମାନଙ୍କ ପାଇଁ ଏକ ପ୍ରକାର ନିରର୍ଥକ ବୋଝ ନ ହୁଏ ସେଥିପ୍ରତି ଦୃଷ୍ଟି ରଖିବାକୁ ହେବ । ଶିକ୍ଷା କିପରି ବାସ୍ତବ ଜୀବନରେ ସାହାଯ୍ୟ କରିବ ଓ ସେଥି ନିମନ୍ତେ ନିରକ୍ଷର ବ୍ୟକ୍ତିର ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧି କିପରି ହେବ ତାହା ଆମର ବିଚାର୍ଯ୍ୟ ବିଷୟ । ଏହାଛଡ଼ା ଶିକ୍ଷାର ଅଭିପ୍ରାୟ ହେଉଛି ତାହାର ଜୀବନ ସଂଗ୍ରାମରେ ସାହାଯ୍ୟ କରି ସାମାଜିକ ଓ ଅର୍ଥନୈତିକ ମାନଦଣ୍ଡକୁ ବୃଦ୍ଧିକରି ଜଣେ ଉତ୍ତମ ନାଗରିକଭାବରେ ଗଢ଼ି ତୋଳିବା । ଜୀବନର ଭିନ୍ନ ଭିନ୍ନ ସମସ୍ୟାକୁ ସମାଧାନ କରାଇ ଏକ ସଭ୍ୟ ମାନବଭାବରେ ନିଜର ପରିବେଶ ସହିତ ଠିକ୍ ଖାପଖୁଆଇ ଚଳିବାପାଇଁ ପ୍ରୌଢ଼ଶିକ୍ଷା ପ୍ରେରଣା ଦେବା ଉଚିତ । ଦେଶର ବିଭିନ୍ନ ଉନ୍ନୟନମୂଳକ ଯୋଜନା ବିଷୟରେ ଧାରଣା ଦେଇ ସେଥିରେ ଅଂଶ ଗ୍ରହଣ କରିବା-ପାଇଁ ଚେଷ୍ଟା କରାଗଲେ ସେମାନଙ୍କର ଜୀବନର ଉନ୍ନତି ହୋଇ ପାରିବ । ତତ୍ ସଙ୍ଗେ ସଙ୍ଗେ ଦେଶର ମଧ୍ୟ ସର୍ବାଙ୍ଗୀନ ଉନ୍ନତି ସାଧନ ହୋଇ ପାରିବ ।

ଏହି ପ୍ରୌଢ଼ଶିକ୍ଷା ଦ୍ୱାରା ସେମାନଙ୍କର ନିରକ୍ଷରତା ଦୂରୀକରଣ ହେବା ସଙ୍ଗେ ସଙ୍ଗେ ଦାରିଦ୍ର୍ୟ ଦୂର ନିମନ୍ତେ ବୃତ୍ତି ବା ଧନ୍ଦାରେ ଆବଶ୍ୟକ ଦକ୍ଷତା ସୃଷ୍ଟି କରିବା ଦରକାର । ଏଥିପାଇଁ ବିଶେଷ କଷ୍ଟ କରିବାକୁ ପଡ଼ିବ ନାହିଁ । କାରଣ ପ୍ରତ୍ୟେକ ବ୍ୟକ୍ତି ତାର ଜୀବିକା ନିର୍ବାହ ନିମନ୍ତେ କିଛି ନା କିଛି ଧନ୍ଦା କରିଥାଏ । କିଏ ସ୍ୱଇଚ୍ଛାରେ ତ ଅନ୍ୟ କିଏ ଗ୍ରହିବାବଶରେ । ପୁଣି ଆଉ କେହି ମୂଳ ଲଗିଥିବେଳେ ଅନେକ ବ୍ୟବସାୟ କରିଥାନ୍ତି । ମାତ୍ର ଯେଉଁମାନେ କୌଣସି ବୃତ୍ତି ଅବଲମ୍ବନ କରିନାହାଁନ୍ତି, ସେମାନଙ୍କୁ ବିଭିନ୍ନ ବୃତ୍ତି ବା ଧନ୍ଦା ବିଷୟରେ ଧାରଣା ଦେବା ପ୍ରୌଢ଼ଶିକ୍ଷା ଦେବା ପ୍ରୟୋଜନ । ଯେଉଁମାନେ ତାଙ୍କର ବାପା ଅଜା ଅମଳରୁ ଏକ ପ୍ରକାର ବୃତ୍ତିକରି ଆସୁଛନ୍ତି ଅଥଚ ସେମାନଙ୍କର ଉନ୍ନତ ଜ୍ଞାନ ଅଭାବରୁ ତାହା ବିଶେଷ ଲାଭଦାୟକ ହୋଇ ପାରୁନି ସେପରି କ୍ଷେତ୍ରରେ ସେମାନଙ୍କୁ କିପରି ଆବଶ୍ୟକୀୟ ଜ୍ଞାନ ଦିଆଯାଇ ପାରିବ ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ତା ହେଲେ ସେମାନଙ୍କର ଭରଣ ପୋଷଣର ବ୍ୟବସ୍ଥା ଅତି ସହଜ ସାଧ୍ୟ ଓ ସୁଖମୟ ହୋଇପାରିବ । ଖାଲି ଏତିକି ନୁହେଁ ସେମାନେ ତାଙ୍କର ଜୀବନ ସଂଗ୍ରାମ କ୍ଷେତ୍ରରେ ସଫଳତା ହାସଲ କରି ପାରିବେ । ଉଦାହରଣତଃ, ଆମ ଦେଶରେ ଅଧିକାଂଶ କୃଷକ ନିରକ୍ଷର । କୃଷିକରି ରୋଜଗାର ଦ୍ୱାରା ପେଟ ପାଳିବା ସେମାନଙ୍କର ଧନ୍ଦା । ମାତ୍ର ସେମାନଙ୍କର ପରିବାର ବୃଦ୍ଧିଫଳରେ କୃଷିଧନ୍ଦା ବିଶେଷ ଲାଭପ୍ରଦ ହୋଇ ପାରୁନି । ତେଣୁ କୃଷକମାନଙ୍କୁ ଉନ୍ନତ କୃଷି ସମ୍ବନ୍ଧୀୟ ଜ୍ଞାନ ଏହି ପ୍ରୌଢ଼ଶିକ୍ଷା ମାଧ୍ୟମରେ ଦେଲେ ତାହା ସେମାନଙ୍କର ଜୀବନାଭିମୁଖୀ ହୋଇ ପାରିବ । ଫଳରେ ସେମାନେ ତାଙ୍କର ନିଜ ଜୀବନରେ ଉନ୍ନତ ପ୍ରଣାଳୀ ଦ୍ୱାରା ଚାଷ କରିପାରିବେ ଅଧିକ ପନିପରିବା ଓ ଖାଦ୍ୟ ଶସ୍ୟ ଉତ୍ପନ୍ନ କରିପାରିବେ । ଏହି କଥାକୁ ଉପଲବ୍ଧି କରି ଆମ ସରକାର ୧୯୬୭ରେ କୃଷକ ସାକ୍ଷରତା ଯୋଜନା - ନାମରେ ଏକ ନୂଆ ଯୋଜନା ପ୍ରବର୍ତ୍ତନ କଲେ । ଏହାର ଦୁଇଟି ଉଦ୍ଦେଶ୍ୟ । ପ୍ରଥମେ ସେମାନେ ନିଜର ବୃତ୍ତି ସମ୍ବନ୍ଧୀୟ ଜ୍ଞାନ ପାଇବେ ଯାହା ନିଜ କୃଷିକ୍ଷେତ୍ରରେ ପ୍ରୟୋଗକରି ଅଧିକ ଲାଭବାନ ହୋଇ ପାରିବେ ଏବଂ ଦ୍ୱିତୀୟରେ ସେମାନଙ୍କର ନିରକ୍ଷରତା ଦୂର ହେବ । ଏହା ଦ୍ୱାରା ସେମାନେ ସୁଖକର ଜୀବନ ଅତିବାହିତ କରିବେ ଓ ଶିକ୍ଷା ଲାଭଦ୍ୱାରା ଅନେକ କିଛି ଜାଣି ପାରିବେ । ଦୈନନ୍ଦିନ ଜୀବନରେ ଶିକ୍ଷା ଅଭାବରୁ ଯେଉଁ ପ୍ରକାର ଅସୁବିଧା ମଧ୍ୟରେ ସେମାନେ ଗତି କରୁଥିଲେ ତାହାର ସମାଧାନ ମଧ୍ୟ ଦେଇ ପାରିବ । ଯେପରି ହାଟ ବଜାରରୁ କିଣା ବିକା ପାଇଁ ଗଲେ ଶିକ୍ଷା ଫଳରେ ଠିକ୍ ହିସାବ କରି ପାରିବା ନିଜର ନାମ ସ୍ୱାକ୍ଷର କରି ପାରିବା, ବେପାରୀମାନଙ୍କ ଦାଉରୁ ରକ୍ଷା ପାଇବା ଏବଂ ବିଭିନ୍ନ ପୁସ୍ତକ ପଢ଼ି ବହୁତ କିଛି ଜାଣି ପାରିବା ପ୍ରଭୃତି ।

ଶିକ୍ଷା କିପରି କର୍ମାଭିମୁଖୀ ହୋଇ ଜୀବନର ଅଜ୍ଞାନତାର ଅନ୍ଧକାରକୁ ଦୂର କରି ପାରିବ ତାହା ପ୍ରୌଢ଼ଶିକ୍ଷାର ଲକ୍ଷ୍ୟ ହୋଇ ପାରିଲେ ଏହା ନିଶ୍ଚିତରେ ସଫଳ ହୋଇ ପାରିବ । ଫଳରେ ଅଶିକ୍ଷିତ ଜନସାଧାରଣ ଏହାର ସୁଯୋଗ ନେବାକୁ ଆଗ୍ରହ ପ୍ରକାଶ କରିବେ ଓ ସେମାନଙ୍କର ସର୍ବାଙ୍ଗୀନ ବିକାଶ ସାଧନ ହୋଇ ପାରିବ ।

ଶିକ୍ଷା ଅଭାବରେ ସେମାନଙ୍କ ମଧ୍ୟରେ ବ୍ୟାପିଥିବା କେତେକ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂରହୋଇ ପାରିବ । ପାଠପଢ଼ି ଦେଶ ବିଦେଶର ଖବର ଜାଣିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ଯୁଗର ଉନ୍ନତି ଓ ଚିନ୍ତାଧାରା ତାଙ୍କର ଜୀବନରେ ସ୍ଥାନପାଇ ପାରିବ । ସେମାନେ ସମାଜରେ ବିଶେଷ

ଆବୃତ ହେବେ । ତାଙ୍କର ପରିବାରର ସମସ୍ତେ ସୁଖ ଓ ଆନନ୍ଦରେ ଜୀବନ ଅତିବାହିତ କରି ପାରିବେ । ସମସ୍ତଙ୍କର ଭଲମନ୍ଦ ବିଚାର କରିବାର ଦକ୍ଷତା ହୋଇ ପାରିବ । ଯିଏ ଯେଉଁ ପ୍ରକାର ବୃତ୍ତି କରନ୍ତୁ ନା କାହିଁକି ତାହା ବେଶ୍ ଉନ୍ନତ ବ୍ୟବସ୍ଥା ଦ୍ୱାରା ଠିକ୍ ପରିଚାଳନା କରି ପାରିବେ । ଠକ୍, ଭଣ୍ଡ ଓ ଅସାଧୁ ଶ୍ରେଣୀର ବ୍ୟକ୍ତି-ମାନଙ୍କର କବଳରୁ ସେମାନେ ରକ୍ଷା ପାଇ ପାରିବେ । ଭବିଷ୍ୟତ ଜୀବନରେ ସେମାନେ ତାଙ୍କର ପିଲା ପିଲିଙ୍କୁ ଶିକ୍ଷା ଦେବା ପାଇଁ ଉଦ୍ୟମ କରିବେ । ପ୍ରୌଢ଼ଶିକ୍ଷା ଯେପରି ଜୀବନାଭିମୁଖୀ ହେବ ନିରକ୍ଷରତା ଦୂରୀକରଣ ଓ ଭଟିବ ହଟିବାର ମାର୍ଗ ଆମଦେଶରେ ସେତେ ସଫଳ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ । ଏହିପରି ଉଦ୍ୟମ ସମଗ୍ର ଶିକ୍ଷିତ ବ୍ୟକ୍ତିଙ୍କ ହେବା ପ୍ରୟୋଜନ । ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଅନ୍ୟଜଣେ ଅଶିକ୍ଷିତ ନିରକ୍ଷର ଭାଇକୁ ଅକ୍ଷର ପ୍ରଦାନ କରିବା ଜୀବନର ଧର୍ମ ଓ ସେବା ବୋଲି ଗ୍ରହଣ କଲେ ସରକାରଙ୍କର ଏ ଯୋଜନା ଫଳପ୍ରଦ ହୋଇ ପାରିବ ।

ଅଧ୍ୟାପକ, ଡି. ଏ. ଭି. କଲେଜ,
କୋରାପୁଟ-୭୬୪୦୨୦



ପ୍ରଧାନମନ୍ତ୍ରୀ ଶ୍ରୀ ଗାନ୍ଧୀଙ୍କ ସହ ଶ୍ରୀଲଙ୍କାର ଜାତୀୟ ନିରାପତ୍ତା ମନ୍ତ୍ରୀ

# ଖଣ୍ଡଗିରି ଖଣ୍ଡଗିରି ମେଳା

ଶ୍ରୀ ନରହରି ଉପାଧ୍ୟାୟ

ପୁରାଣ ପ୍ରସିଦ୍ଧ କୋଟି ଲିଂଗ କ୍ଷେତ୍ର ଏକାମ୍ରକ ଅନ୍ତଃପାତୀ ତପୋଭୂମି ଖଣ୍ଡଗିରି ଓ ଉଦୟଗିରିର ଆଧ୍ୟାତ୍ମିକ ଗୌରବ ତଥା ଐତିହାସିକ ପ୍ରସିଦ୍ଧି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସବୁଜ ବନାନୀ ସଂକୁଳ ରମଣୀୟ ପ୍ରାକୃତିକ ପରିବେଶ ମଧ୍ୟରେ ପ୍ରାଚୀନ କାଳର ସାଧୁ-ସାଧକ ସମାକୀର୍ଣ୍ଣ, ଆପାଦଶୃଙ୍ଗ-ପରିବେଷ୍ଟିତ ଶତ ଶତ କ୍ଷୁଦ୍ର- ବୃହତ ଗୁହାକୁ ବକ୍ଷରେ ଧାରଣ କରି ଯାମଳ ଗିରିଦ୍ୱୟ ପ୍ରାୟ ଦ୍ୱିସହସ୍ର ବର୍ଷାଧିକ କାଳର ଉତ୍କଳ କଳା ସଂସ୍କୃତିର ମୂକ ସାକ୍ଷୀରୂପେ ସଗୌରବେ ଦଣ୍ଡାୟମାନ । ଏହି ଉଭୟ ଗିରିରେ ସମୁଦାୟ ସାତସ୍ତ୍ର ବାଆନେ ଗୁମ୍ଫା ଥିବା କୁହାଯାଏ । ତନ୍ମଧ୍ୟରେ ମହାମହିମ ଉତ୍କଳ ସମ୍ରାଟ ଖାରବେଳଙ୍କ ଦ୍ୱାରା ନିର୍ମିତ ପ୍ରସିଦ୍ଧ ହାତୀ ଗୁମ୍ଫା ଓ ରାଣୀ ଗୁମ୍ଫାର ବିନ୍ୟାସ ପରିପାଟି ଏବେ ବି ଦର୍ଶକଙ୍କୁ ଅଭିଭୂତ କରେ । କାଳର କରାଳ ପ୍ରଭାବ କିମ୍ବା ପ୍ରକୃତିର କ୍ଷୟକାରିଣୀ ଶକ୍ତି ତାକୁ ସ୍ପର୍ଶ କରିପାରିନାହିଁ । ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଐତିହାସିକ ଗୁମ୍ଫା-ଗୁଡ଼ିକ କେତେକାଂଶରେ ବିକୃତ ହୋଇଥିଲେ ହେଁ, କ୍ଷତି ହରାଇ ନାହିଁ ।

ଖ୍ରୀଷ୍ଟପୂର୍ବ ଯୁଗରୁ ଖଣ୍ଡଗିରି-ଉଦୟଗିରି ବିଭିନ୍ନ ଧର୍ମ ସଂସ୍କୃତିର ସମନ୍ୱୟ ପୀଠଭାବେ ଖ୍ୟାତି ଲାଭ କରିଛି । ଆଦିନାରାୟଣ କପିଳଙ୍କ ମୁଜେ ନବମୁନି ଏହି ନିଭୃତ ନିକାଞ୍ଚନ ଗିରିପୀଠରେ ସାଧନା ଓ ସିଦ୍ଧି ଲାଭ କରି ଜ୍ଞାନାଲୋକ ବିତରଣ କରିଥିଲେ । ଖଣ୍ଡଗିରିସ୍ଥିତ 'ନବମୁନି ଗୁମ୍ଫା' ତା'ର ସ୍ମୃତିସ୍ମାରକୀରୂପେ ଅଦ୍ୟାପି ବିଦ୍ୟମାନ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ବହୁ ଜୈନ ସାଧକ ଖଣ୍ଡଗିରିରେ ତପସ୍ୟା କରି ସିଦ୍ଧି ଲାଭ କରିଥିଲେ । ଷୋଡ଼ଶ ଶତାବ୍ଦୀର ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ପ୍ରଭୃତି ଉତ୍କଳର ସ୍ୱନାମଧନ୍ୟ ପଞ୍ଚସଖା ନିଜ ନିଜ ସାରସ୍ୱତ ସୃଷ୍ଟି ସମୁଚ୍ଚୟରେ ଖଣ୍ଡଗିରି-ଉଦୟଗିରି ସମ୍ବନ୍ଧରେ ବହୁ ତାତ୍ତ୍ୱିକ ସୂଚନା ଲିପିବଦ୍ଧ କରି ଯାଇଛନ୍ତି । ଏହି ସିଦ୍ଧ ସାଧକ ଗୋଷ୍ଠୀ ସେମାନଙ୍କର ସାଧନା କାଳର କିୟଦଂଶ ଖଣ୍ଡଗିରି ତପୋଭୂମିରେ ଅତିବାହିତ କରିଥିବା ସମ୍ଭାବନାକୁ ବାଦ୍ ଦେଇ ହେବ ନାହିଁ । ଶିଶୁ ଅନନ୍ତଙ୍କର ଶିଷ୍ୟ ସିଦ୍ଧ ବାରଂଗ ମହାରାଜ ଜ୍ୟୋତିର୍ମୟ ଅନନ୍ତ ମୂର୍ତ୍ତି ଏବଂ ତଦୀୟ ଗୁରୁଙ୍କର ସୂର୍ଯ୍ୟ ସିଦ୍ଧି ସଂପର୍କରେ ଯେଉଁ ବିବରଣୀ ଦେଇଛନ୍ତି, ତାହା ପ୍ରଣିଧାନ ଯୋଗ୍ୟ ।

ଶିଶୁ ଅନନ୍ତ ଗୋସାଇଁଙ୍କର ନିରାଧାର ସାଧନା ଓ ସାଧନା ପୀଠ ସମ୍ବନ୍ଧରେ ପ୍ରଦତ୍ତ ବିବରଣୀ ଉଦ୍ଧାରଣୀୟ—

"ସପ୍ତଦରଶ ହେଲେ ନିରାହାର,
ବସିଲେ ମଣୀକୂଟୀର ଗୁମ୍ଫାର ।
ସାତଶବାଆନେ ଗୁମ୍ଫାରେ ସାର,
ସର୍ପିଣୀ ଗୁମ୍ଫା ଅଟେ ବଳୀଆର ।
ସେ ଗୁମ୍ଫାରେ ପର୍ଣ ଧାରଣା ଧରି
ତୋତେ ତା କହିବି ବିସ୍ତାର କରି" ।

(ବ୍ରହ୍ମକୁଣ୍ଡଳୀ ଗୀତା : ଅଃ: ୨)

ଏକଦା ଅରୁଣାଗ୍ରିପ୍ରଭ ସୂର୍ଯ୍ୟଦେବ ସାଧନରତ ଶିଶୁ ଅନନ୍ତଙ୍କ ସମକ୍ଷରେ ଆବିର୍ଭୂତ ହେଲେ । ତେଜୋମୟ ଦିବ୍ୟ-ପୁରୁଷ ନୟନ ଗୋଚର ହେବା ମାତ୍ରେ ଏକନିଷ୍ଠ ସାଧକ ବ୍ରହ୍ମ ଲୟ ଧ୍ୟାନରେ ନିମଗ୍ନ ହେଲେ । ପୂର୍ବୋକ୍ତ ଗୀତାରେ କୁହା ଯାଇଛି—

"ମୂଳ କମଳ ଗୁହ୍ୟଦ୍ୱାରେ ଦେଇ,
ଦେଖିଲେ ଅର୍ଦ୍ଧ ଊର୍ଦ୍ଧରେ ମିଶାଇ ।
ମନପବନ ଯେ ଏକତ୍ର କଲେ,
ଉଦେଗିରିର ଉପରେ ବସିଲେ ।
ସୂର୍ଯ୍ୟ ଗାଇତ୍ରୀ ଧରି କଲେ ଲୟେ,
ଦୃଶ୍ୟ ହିଁ ହେଲେ ଶୂନ୍ୟମୟେ ଦେହେ" ।

ତଦନନ୍ତର ଖଣ୍ଡଗିରିରେ ଅପ୍ରକଟ ହୋଇଥିବା ଆଦି ନାରାୟଣ କପିଳମୁନିଙ୍କଠାରୁ ଶିଶୁ ଅନନ୍ତ ଶୂନ୍ୟମୟ ଅନନ୍ତ ମୂର୍ତ୍ତି ଦର୍ଶନର ତାତ୍ତ୍ୱିକ ସୂତ୍ର ଏବଂ 'ଅଜପା' ମନ୍ତ୍ର ଓ 'ଅଣ ସାଧନ' ତତ୍ତ୍ୱ ଦୀକ୍ଷା ଲାଭ କରିଥିଲେ । ଉତ୍କଳ ସମ୍ରାଟ ଲଲଟେନ୍ଦୁ କେଶରୀ ଖଣ୍ଡଗିରିର ଅନନ୍ତ ଗୁମ୍ଫାରେ ଯେଉଁ 'ଅନନ୍ତ କେଶରୀ' ଠାକୁରଙ୍କୁ ପ୍ରତିଷ୍ଠା କରିଥିଲେ, ସେ ହୁଏତ କପିଳଙ୍କ ସୂଚିତ 'ଶୂନ୍ୟମୟ ଅନନ୍ତମୂର୍ତ୍ତିଙ୍କର ପରିକଳ୍ପିତ ସାକାର ରୂପ । ଏବେ ଶ୍ରୀଅନନ୍ତ କେଶରୀ ଠାକୁରେ ଆଦିପୀଠ ଅନନ୍ତଗୁମ୍ଫାରୁ ଅପସାରିତ ହୋଇ ନିକଟସ୍ଥ ଜାଗମରା

ସ୍ଥାନର ନାଗାଙ୍କ ମଠରେ ପୂଜିତ ହେଉଛନ୍ତି । ମାଘ ସପ୍ତମୀ ଦିନ ରାତ୍ରୀଠାରୁ ଶ୍ରୀଅନନ୍ତ କେଶରୀ ଉଦୟଗିରିରେ ବିଜେ ହୋଇ ପୂର୍ଣ୍ଣିମା ପର୍ଯ୍ୟନ୍ତ ସେଠାରେ ନବରାତ୍ର ଯାପନ କରନ୍ତି । ଏହି ନବଦିନ ଖଣ୍ଡଗିରିରେ ସାଧୁସନ୍ଥ ସମାବିଷ୍ଟ ସୁପ୍ରସିଦ୍ଧ କୁମ୍ଭ ମେଳା ଅନୁଷ୍ଠିତ ହୋଇଥାଏ । ମେଳା ଉଦ୍‌ଯାପନ ପରେ ଠାକୁରେ ପୁଣି ସ୍ୱାଧିଷ୍ଠାନ ନାଗାଙ୍କ ମଠକୁ ବାହୁଡ଼ି ଆସନ୍ତି ।

ମହାବୀର ହନୁମାନଜୀ 'ଅଜପା' ମନ୍ତ୍ର ସାଧନରେ ସିଦ୍ଧି ଲାଭ କରି ପରମତତ୍ତ୍ୱପ୍ରାପ୍ତ ହୋଇଥିବା ସିଦ୍ଧବାରଂଗ ଗୋସାଇଁ ନିମ୍ନମତେ ଉଲ୍ଲେଖ କରିଛନ୍ତି:–

"ଅଜପା ଯେନିତି ଯେହି ବିଗ୍ରହ,
ଯେ ଭାବ ସାଧିଥିଲେ ହନୁବୀର ।
ପରମତତ୍ତ୍ୱଟି ଏହାକୁ କହି"......ଇତ୍ୟାଦି ।

(ବ୍ର: ବୃ: ଗୀତା, ଅ: ୯)

ଖଣ୍ଡଗିରିର ଅଧିଷ୍ଠାତ୍ରୀ ଦେବୀ ମହାମହିମାମୟୀ ବାରଭୁଜା ଦୁର୍ଗାଙ୍କ ଗୁମ୍ଫାର ଦ୍ୱାରଦେଶରେ ବିରାଜିତ 'ସିଦ୍ଧ ମହାବୀର' ଉଦ୍ଧୃତି ଦୃଢ଼ିତ ପରମ ଗୁହ୍ୟତତ୍ତ୍ୱ ଶ୍ରୀ ହନୁମାନଜୀଙ୍କର ସିଦ୍ଧି ସ୍ଥଳକୁ ତାତ୍ପର୍ଯ୍ୟାନ୍ୱିତ କରୁଥିବା ମନେହୁଏ । ଉଦୟଗିରିରେ ତପସ୍ୟା କରି ସିଦ୍ଧି ଲାଭ କରିଥିବା ସାଧୁ ପୁରୁଷଙ୍କ ମଧ୍ୟରେ ମହିମା ଗୋସାଇଁ ଅନ୍ୟତମ । ଖଣ୍ଡଗିରି ଛକରେ ବ୍ରହ୍ମ ଅବଧୂତ ଜୟକୃଷ୍ଣ ବାବାଙ୍କ ଦ୍ୱାରା ପ୍ରତିଷ୍ଠିତ ମହିମା ଆଶ୍ରମ ସିଦ୍ଧ ମହାପୁରୁଷଙ୍କର ସ୍ମୃତି ବହନ କରେ । ଅନ୍ୟତମ ପ୍ରସିଦ୍ଧ ସାଧୁ ଶ୍ରୀ ଅରକ୍ଷିତ ଦାସ ମହାପୁରୁଷ ଖଣ୍ଡଗିରିର ଅନନ୍ତ ଗୁମ୍ଫାରେ ସାଧନା କରିଥିଲେ । ଖଣ୍ଡଗିରି ଅବସ୍ଥାନ କାଳରେ ସେ ତାଙ୍କର ପ୍ରସିଦ୍ଧ ଆଧ୍ୟାତ୍ମିକ ସାରସ୍ୱତକୃତି 'ମହୀ ମଣ୍ଡଳ ଗୀତା' ରଚନା କରିଥିଲେ । ଖଣ୍ଡଗିରିର ଉନ୍ନତି ପାଇଁ ସେ ଯାହା ଯାହା କରିଥିଲେ ତଦ୍‌ଭକ୍ତି ଉଦ୍ଧୃତିରୁ ତାର ଏକ ସ୍ପଷ୍ଟ ଚିତ୍ର ମିଳେ ।

"ତୋର ମାୟାରେ ମୁଁ ଭ୍ରମିଲି,
ଗୁମ୍ଫା ଗୁଡ଼ାଏ ଖୋଳାଇଲି ।
ଗଛ ବୃକ୍ଷ ଗୁଡ଼ାଏ ହାଣି,
ଅପରାଧ ଅରଜିଲି ପୁଣି ।
ପାଷାଣ ଗୁଡ଼ାଏ କଟାଇ,
ଲୋକଙ୍କୁ ବଡ଼ କଷ୍ଟ ଦେଇ ।
ନିର୍ଦ୍ଦୋଷୀ ଜୀବଙ୍କୁ ମାରିଲି,
ତୋର ମାୟାରେ ମୁଁ ଭ୍ରମିଲି" ।

(ମହୀମଣ୍ଡଳ ଗୀତା, ଅ: ୧୧)

ଏ ସବୁ କାର୍ଯ୍ୟ କଲ ପରେ, କାହିଁକି କେଜାଣି, ତାଙ୍କର ହୃଦୟ ଦୌର୍ବଲ୍ୟ ଜାତ ହୋଇଛି । ସେ ନିଜକୁ ଅପରାଧି ଜ୍ଞାନ କରି, ଖଣ୍ଡଗିରି ଛାଡ଼ି କଟକ ଜିଲ୍ଲାର ଓଳାଶୁଣି ପାହାଡ଼କୁ ଚାଲି ଯାଇଥିଲେ ।

ଏକଦା ଖଣ୍ଡଗିରି-ଉଦୟଗିରିରେ ଜୈନ ସଂସ୍କୃତିର ଅଖଣ୍ଡ ପ୍ରଭାବ ପ୍ରତିଷ୍ଠିତ ହୋଇଥିଲେ ହେଁ ହିନ୍ଦୁ ସଂସ୍କୃତିର ପ୍ରଭାବକୁ କ୍ଷୁଣ୍ଣ କରି ପାରି ନାହିଁ । ଖଣ୍ଡଗିରିର ଆକାଶ ଗଙ୍ଗା, ଗୁପ୍ତ ଗଙ୍ଗା, ରାଧାକୁଣ୍ଡ, ଶ୍ୟାମକୁଣ୍ଡ ଓ ଉଦୟଗିରିର ଲଳିତା କୁଣ୍ଡ ପ୍ରଭୃତି ପଞ୍ଚତୀର୍ଥ ଏବଂ ବାରଭୁଜା ଗୁମ୍ଫା, ଗଣେଶ ଗୁମ୍ଫା, ଜଗନ୍ନାଥ ଗୁମ୍ଫା ପ୍ରଭୃତି ହିନ୍ଦୁ ସଂସ୍କୃତିର ବଳିଷ୍ଠ ପ୍ରାମାଣିକ ଭିତ୍ତିରୂପେ ବିଦ୍ୟମାନ । ଅଚ୍ୟୁତାନନ୍ଦ ମହାପୁରୁଷଙ୍କ ଉକ୍ତିରେ, ଶ୍ରୀ କ୍ଷେତ୍ର ହେଉଛି ଶ୍ରୀ ଜଗନ୍ନାଥଙ୍କର ଲୀଳା କ୍ଷେତ୍ର ଏବଂ ଖଣ୍ଡଗିରି ହେଉଛି ଗୁପ୍ତ କ୍ଷେତ୍ର । ଖଣ୍ଡଗିରି ପାଦ ଦେଶରେ ବାରଭୁଜା ଗୁମ୍ଫାଭ୍ୟନ୍ତରେ ପୂଜିତା ଦେବୀ ମୂର୍ତ୍ତି ଦ୍ୱୟର ଆଧ୍ୟାତ୍ମିକ ସ୍ଥିତି ଅତି ତତ୍ତ୍ୱପୂର୍ଣ୍ଣ ଓ ରହସ୍ୟମୟ । ବାମ ଓ ଦକ୍ଷିଣ ପଟେ ବିରାଜିତା ଦେବୀ ଦ୍ୱୟ ଯଥାକ୍ରମେ ମହାକାଳୀ ଓ ମହାଲକ୍ଷ୍ମୀରୂପେ ସମ୍ମାନିତା । କେହି କେହି ଦେବୀ ଦ୍ୱୟଙ୍କୁ ମହାମାୟା ଓ ଯୋଗମାୟା ବୋଲି କହନ୍ତି । ଏମାନଙ୍କର ଦୈବୀ ଭୂମିକା ଅନୁସାରେ ମହାମାୟା ସଂସାରଲୀଳା କରନ୍ତି ଏବଂ ଯୋଗମାୟା ଜୀବକୁ ବ୍ରହ୍ମଯୁକ୍ତ କରାନ୍ତି । ଏହାର ତାତ୍ତ୍ୱିକ ବିଶ୍ଳେଷଣ କେବଳ ତତ୍ତ୍ୱାନୁଭବୀ ସିଦ୍ଧ ସାଧକମାନେ କରି ପାରିବେ । ଜନଶ୍ରୁତିରୁ ଜଣାଯାଏ, ଦୈତପତି ରାବଣ ଏକ ସମୟରେ ସିଦ୍ଧି ଲାଭ ପାଇଁ ଖଣ୍ଡଗିରିରେ ଆସି ତପ ସାଧନା କରିଥିଲେ ! ହିନ୍ଦୁ, ଜୈନ, ସୌର, ଶାକ୍ତ, ଗାଣପତ୍ୟ, ଅବଧୂତାଦି ବିଭିନ୍ନ ଧାର୍ମିକ ଗୋଷ୍ଠୀର ସମନ୍ୱୟସ୍ଥଳୀ ଖଣ୍ଡଗିରି, ଏହାକୁ ଅସ୍ୱୀକାର କରିହେବ ନାହିଁ ।

ଖଣ୍ଡଗିରିର କୁମ୍ଭମେଳା ଏକ ପୁରାତନ ଅନୁଷ୍ଠାନ । ଏହା କେବେଠାରୁ ଆରମ୍ଭ ହୋଇଛି, ଜାଣିବା ପାଇଁ କୌଣସି ପ୍ରମାଣସିଦ୍ଧ ତଥ୍ୟ ନାହିଁ । ଏଥିପାଇଁ କେବଳ ଜନଶ୍ରୁତି ଉପରେ ନିର୍ଭର କରିବାକୁ ପଡ଼େ । ସର୍ବାଗ୍ର ପୂଜ୍ୟଦେବ ଗଣନାଥ ସର୍ବତ୍ର କୁମ୍ଭ ବା କଳସରୂପରେ ପୂଜା ପାଆନ୍ତି । ଜନଶ୍ରୁତି ଅନୁସାରେ, ହରପାର୍ବତୀ ପ୍ରଥମେ ଏକାମ୍ର କ୍ଷେତ୍ରକୁ ଆସି ପବିତ୍ର ମାଘ ସପ୍ତମୀ ଦିନ ଶୁଭକୁମ୍ଭ ସ୍ଥାପନ ପୂର୍ବକ ଯୋଗ ଧ୍ୟାନରେ ବସିଥିଲେ । ଏହି ଦିବସଠାରୁ ନବଦିନ ବ୍ୟାପୀ ଅନୁଷ୍ଠିତ କୁମ୍ଭମେଳା ତା'ର ସ୍ମାରକୀ ପର୍ବରୂପେ ପାଳିତ ହୁଏ । କେହି କେହି ନବାହ ମେଳାକୁ ନବଧାଭକ୍ତିତତ୍ତ୍ୱ ସହ ସଂପର୍କିତ କରିଥାଆନ୍ତି । ଗୁହ୍ୟତତ୍ତ୍ୱ ଅଗ୍ନିଦେବଙ୍କର ପରିତୃପ୍ତି ପାଇଁ ଅଗ୍ନି ଉତ୍ସବ ଦିନ ନବଦିନ ବ୍ୟାପୀ ଯଜ୍ଞାନୁଷ୍ଠାନର ପୂର୍ଣ୍ଣାହୁତି ହେବା ବିଧି ପ୍ରଚଳିତ । କୁମ୍ଭମେଳା ଉପଲକ୍ଷେ ଖଣ୍ଡଗିରିରେ ବହୁ ସାଧୁ ସନ୍ଥ, ସିଦ୍ଧ ସାଧକଙ୍କର ସମାବେଶ ହୁଏ । ସେହି ନଅଟି ଦିନ ନିରାଞ୍ଜନ ପାର୍ବତ୍ୟ ଅଞ୍ଚଳଟି ଭଜନ ସାଧନ ସଙ୍ଗୀତ ଜନକୋଳାହଳରେ ମୁଖର ହୋଇ ଉଠେ । ମାଘ ସପ୍ତମୀ ଦିନ କୋଣାର୍କ ମନ୍ଦିରର ଅଦୂରବର୍ତ୍ତୀ ବଙ୍ଗୋପସାଗର କୂଳରେ ପ୍ରସିଦ୍ଧ ଚନ୍ଦ୍ରଭାଗା ମେଳା ଅନୁଷ୍ଠିତ ହୁଏ । ହିନ୍ଦୁ ଧର୍ମ ଜଗତରେ ଏ ଦିନଟି ଅତି ପବିତ୍ର ଦିନ । ସେ ଦିନ ପ୍ରଭାତରୁ ସହସ୍ର ସହସ୍ର ହିନ୍ଦୁ ନରନାରୀ, ସାଧୁ ସନ୍ନ୍ୟାସୀ ଚନ୍ଦ୍ରଭାଗାରେ ବୁଡ଼ ପକାଇ ସମୁଦ୍ର ବକ୍ଷରେ ଉଦୟକାଳୀନ ସୂର୍ଯ୍ୟଙ୍କୁ ଦର୍ଶନ କରନ୍ତି । ଲୋକ ମୁଖରୁ ଶୁଣାଯାଏ, ବାଳସୂର୍ଯ୍ୟଙ୍କର ଡେଇଁ ପଡ଼ିଲା ଭଳି ଦୃଶ୍ୟଟି ଅତି ଚିତ୍ତାକର୍ଷକ । ଲୌକିକ ବିଶ୍ୱାସରେ, ସୂର୍ଯ୍ୟଦେବ ବିଶ୍ୱପରିକ୍ରମା ପାଇଁ ମା କୋଳରୁ ଡେଇଁ ଆସନ୍ତି । ସାଧୁ ସନ୍ଥ ଗଣ ସ୍ନାନାନ୍ତେ ପଦ ଯାତ୍ରାରେ ଆସି ଅସ୍ତାଚଳ ଖଣ୍ଡଗିରିରେ ଅଭିଜାନାନ ସୂର୍ଯ୍ୟଙ୍କୁ ଦର୍ଶନ କରନ୍ତି ଏବଂ ତଦ୍ଦେଶ୍ୟରେ ସମର୍ପିତ ଖଣ୍ଡଷଷ୍ଠୀ

ସେବନ କରି ତତ୍ରାନୁଷ୍ଠିତ ପାରମ୍ପରିକ ଲୁମ୍ବ ମେଳାରେ ଯୋଗଦାନ କରନ୍ତି । ଏହାଦ୍ୱାରା ମାଘ ସପ୍ତମୀ ଚନ୍ଦ୍ରଭାଗା ବୁଡ଼ର ପୂର୍ଣ୍ଣାଙ୍ଗ ପୁଣ୍ୟଫଳ ପ୍ରାପ୍ତି ସମ୍ବନ୍ଧୀୟ ବଦ୍ଧମୂଳ ବିଶ୍ୱାସ ଚରିତାର୍ଥ ହୋଇଥାଏ । କେଉଁ ଅଜ୍ଞାତ କାଳରୁ ପ୍ରଚଳିତ ଲୋକବାଣୀ ଅଛି—

"ସାତଥର ଯିବ ଗଙ୍ଗା,
ଥରେ ଯାଇଥିଲେ ଚନ୍ଦ୍ରଭାଗା
ଖଣ୍ଡଗିରିରେ ମୁଁହ ରଙ୍ଗା" ।

ମାଘ ସପ୍ତମୀ ଦିନ ବ୍ରାହ୍ମମୁହୂର୍ତ୍ତରୁ ଖଣ୍ଡଗିରିସ୍ଥିତ ଆକାଶ-ଗଙ୍ଗାରେ ଅନେକ ଲୋକ ବୁଡ଼ ପକାଇ ଗୁପ୍ତଗଙ୍ଗାର ଜଳ ସେବନ କରନ୍ତି ।

ଯୁଗ ପରିବର୍ତ୍ତନ ଫଳରେ ବହୁ ବ୍ୟତିକ୍ରମ ଘଟିଯାଇ ଥିଲେ ହେଁ କେଉଁ ଆବହମାନ କାଳରୁ ଅନୁଷ୍ଠିତ ହୋଇ ଆସୁଥିବା ଖଣ୍ଡଗିରି ଖଣ୍ଡୀକ୍ଷେତ୍ରୀ ମେଳା ଏବେ ବି ଅନୁଷ୍ଠିତ ହେଉଛି । ପୂର୍ବେ ବହୁ ସାଧୁସନ୍ଥ ସମାବେଶରେ ଧର୍ମ ଚର୍ଚ୍ଚା ଓ ଭଜନ ସାଧନାଦି ଆଧ୍ୟାତ୍ମିକ କର୍ମାନୁଷ୍ଠାନ-ମାନ ହେଉଥିଲା । ପରବର୍ତ୍ତୀ କାଳରେ ଧାର୍ମିକ ପରିବେଶରେ ଅବନତି ଘଟି ନାଟ-ତାମସା, ଦୋକାନ-ବଜାର, କିଣା-ବିକା, ଗହଳ-ଚହଳରଧୁମ୍ ଲାଗିଛି । ଆଧ୍ୟାତ୍ମିକ ପରିବେଶକୁ ବ୍ୟାହତ କରି ତାମସିକ ପରିବେଶ ହିଁ ହୋଇଛି ମେଳାର ଆକର୍ଷଣୀ । ପାରଂପରିକ ଗୌରବର ପୁନରୁଦ୍ଧାର ଲକ୍ଷ୍ୟରେ କେତେକ ସାଧୁସନ୍ଥ ଏବଂ ଉତ୍ସାହୀ ଧର୍ମପ୍ରାଣ ବ୍ୟକ୍ତି ମନପ୍ରାଣ ଢାଳି ଦେଇଥିବା ଏକ ଶୁଭ ଲକ୍ଷଣ । ପଟାମୁଣ୍ଡାଇର ଗୋସ୍ୱାମୀ ଶ୍ରୀ ପୀତାମ୍ବର ଦାସ ମହାରାଜ ୧୭ । ୧୮ ବର୍ଷ ହେବ ଖଣ୍ଡଗିରି ମେଳାରେ ଯଜ୍ଞାନୁଷ୍ଠାନ କରୁଛନ୍ତି । ବ୍ରହ୍ମଲୀନ ଟଗଲ ବାବାଙ୍କର ଉତ୍ସାହକ୍ରମେ ଗତବର୍ଷଠାରୁ 'ବାରଭୁଜାଦୁର୍ଗା ଶ୍ରୀରାମଚରିତ-ମାନସ ମଣ୍ଡଳୀ' ଧାର୍ମିକ ଅନୁଷ୍ଠାନର ଆନୁକୂଲ୍ୟରେ ନବାହ୍ନ ମାନସପାରାୟଣ ଅନୁଷ୍ଠିତ ହେଉଛି । ଚଳିତ ବର୍ଷ ପାରାୟଣ ସଙ୍ଗକୁ ସାଧୁସମ୍ମିଳନୀ ଓ ବିଶ୍ୱଶାନ୍ତି ପାଇଁ ସାମୂହିକ ପ୍ରାର୍ଥନାଦି ନୂତନ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଥିବା ସୁଖର କଥା । ଏହାକୁ ସାଫଲ୍ୟମଣ୍ଡିତ କରିବାପାଇଁ ଜନସହଯୋଗ ଲୋଡ଼ା ।

ସର୍ବମୟ କର୍ତ୍ତାଙ୍କର ପ୍ରସନ୍ନତାପାଇଁ ପ୍ରାର୍ଥନା ଆବଶ୍ୟକ । ସ୍ୱାମୀ ଶିବାନନ୍ଦ କହିଛନ୍ତି, ପ୍ରାର୍ଥନା ଏକ ବଳିଷ୍ଠ ଆଧ୍ୟାତ୍ମିକ ଶକ୍ତି, ଆତ୍ମାର ଆଧ୍ୟାତ୍ମିକ ଖାଦ୍ୟ । ଏପରି କିଛି ଯନ୍ତ୍ରଣା ନାହିଁ, ଯାହା ପ୍ରାର୍ଥନାରେ ଉପଶମିତ ନ ହେବ । ପ୍ରାର୍ଥନା ହେଉଛି ସେହି ଅଦ୍ଭୁତ ଶକ୍ତି ଯାହାଦ୍ୱାରା ଐଶୀଶକ୍ତି ମାନବ ଧମନୀକୁ ପ୍ରବାହିତ ହୁଏ । ପ୍ରାର୍ଥନା ଆଧ୍ୟାତ୍ମିକ ଶକ୍ତି ବୃଦ୍ଧିକରି ଆତ୍ମାର ବିକାଶ ଘଟାଏ, ନର ନାରାୟଣରେ ପରିଣତ ହୁଏ । ଉତ୍ତମ ପୁରୁଷ ସାଧୁସନ୍ଥଗଣଙ୍କର ସାତ୍ତ୍ୱିକ ପ୍ରାର୍ଥନା ସଚରାଚର ଜୀବ-ଜଗତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ଯୁଗେ ଯୁଗେ ସାଧୁସାଧକ-ମାନଙ୍କର ପ୍ରାର୍ଥନାଦ୍ୱାରା ହିଁ ବିଶ୍ୱଶାନ୍ତି ସଂଭବ ହୋଇଛି । ଖଳଶକ୍ତିର ପ୍ରାଦୁର୍ଭାବରେ ବିଶ୍ୱଜଗତରେ ଯେତେବେଳେ ଧର୍ମ ବିପ୍ଳବ ସଂଘଟିତ ହୁଏ, ପ୍ରତିକାର ପାଇଁ ବ୍ରହ୍ମାଦି ଦେବଗଣ ପରମେଶ୍ୱରଙ୍କର ଶରଣାପନ୍ନ ହୁଅନ୍ତି । ସାଧୁ ନିସ୍ତାରଣ ଓ ଧର୍ମସଂସ୍ଥାପନ ଲାଗି ଭଗବତ୍‌ଶକ୍ତି ବିଭିନ୍ନ ଅବତାରରୂପେ ଧରାବତୀର୍ଣ୍ଣ ହୁଅନ୍ତି । ସୃଷ୍ଟିର ଆବହମାନ କାଳରୁ ସମୂହ ପ୍ରାର୍ଥନା ଦ୍ୱାରା ବିଶ୍ୱ ସମସ୍ୟାର ସମାଧାନ ହୋଇଆସିଛି । ଅଧୁନାଗତ ସଂସାରର ବାତାବରଣ ଅତି ଦୂଷିତ ଓ ଉଦ୍‌ବେଗ-ଜନକ ହୋଇଉଠିଛି । ଆଜି ମାନବ ସମାଜ ଘୋର ଦୁର୍ଦ୍ଦିନରେ ପତିତ । ଅନାଚାର, ଅତ୍ୟାଚାର, ଅନୀତି, ଦୁର୍ନୀତି, ଗର୍ବ, ଦମ୍ଭ, ଅଭିମାନ, ଅହଂକାର ତା'ର ବାହୁ ବିସ୍ତାର କରି ଚାଲିଛି । ପ୍ରାଣୀଜଗତର ସ୍ଥିତି ଏବେ ସଙ୍କଟାପନ୍ନ । ସର୍ବତ୍ର ନୈରାଶ୍ୟର ବାତାବରଣ । ନିଷ୍କୃତିର ଏକମାତ୍ର ରାହା ସମୂହ ପ୍ରାର୍ଥନା । ଦିବ୍ୟଦ୍ରଷ୍ଟା ମହାପୁରୁଷ ଅଚ୍ୟୁତାନନ୍ଦ ଭବିଷ୍ୟତବାଣୀ ଶୁଣାଇ-ଥିଲେ—

"ସର୍ବେ ହୋଇଣ ଏକମୁଖ
ଡାକିଲେ ନାରାୟଣ ରଖ
ହୋଇଣ କଳ୍କି ଅବତାର
ନାଶିବେ ଅବନୀର ଭାର" ।

ବର୍ତ୍ତମାନ ବିଶ୍ୱବାସୀଙ୍କ ପାଇଁ ଯେଉଁ ଅମଙ୍ଗଳସୂଚକ ସମୟ ଆସିଛି ତା'ର ନିରାକରଣ ପାଇଁ ସିଦ୍ଧଧାମ ଖଣ୍ଡଗିରିରୁ ସମୂହ ବିଶ୍ୱ ପ୍ରାର୍ଥନାର ଶୁଭାରମ୍ଭ ହେଉଛି । ବିଶିଷ୍ଟ ସାଧୁ-ସନ୍ଥଗଣ କାର୍ଯ୍ୟକ୍ରମରେ ସହଯୋଗ ଓ ପୃଷ୍ଠପୋଷକତା କରୁଛନ୍ତି । ଏହାର ବ୍ୟାପକ ପ୍ରସାର ପାଇଁ ଜନସାଧାରଣ ଯତ୍ନବାନ ହେଲେ ବହୁ ସମସ୍ୟାର ସମାଧାନ ଓ ବିଶ୍ୱଶାନ୍ତି ସମ୍ଭବ ହେବ ।

ଅସ୍ୟମାରମ୍ଭ ଶୁଭାୟ ଭବତୁ ।

୪-ଆର୍-୨୮୩
ଗଙ୍ଗାନଗର,
ଭୁବନେଶ୍ୱର-୭୫୧୦୦୧

ସୃଜନାତ୍ମକ କଳାଦ୍ୱାରା ଜୀବନର ଅନ୍ତର୍ନିହିତ ସତ୍ୟ ଓ ସୌନ୍ଦର୍ଯ୍ୟର ପ୍ରକାଶ ଘଟିଥାଏ । ଯେଉଁ ଶିଳ୍ପୀ, କଳାକାର ଓ ଲେଖକମାନେ ଶତାବ୍ଦୀ ଶତାବ୍ଦୀ ଧରି ସୌନ୍ଦର୍ଯ୍ୟବୋଧର ପରଂପରାକୁ ବଞ୍ଚାଇ ରଖିଛନ୍ତି, ସେମାନଙ୍କ ନିକଟରେ ଆମେ ଯଥେଷ୍ଟ ଋଣୀ । ଏହି ଅମୂଲ୍ୟ ଐତିହ୍ୟକୁ ଆମକୁ ବଜାୟ ରଖିବାକୁ ହେବ ଏବଂ କଳାର ବିକାଶଲାଗି ଉତ୍ତମ ପରିବେଷ୍ଟନୀ ସୃଷ୍ଟି କରିବାକୁ ହେବ ।

**ଶ୍ରୀ ରାଜୀବ ଗାନ୍ଧୀ**

# ଟହଲୁ
# ଚଳନ୍ତ ନାଉରେ ଝମ୍ପା

ଶ୍ରୀ ବେଣୁଧର ଦାସ

ପୁରାଣ ବର୍ଣ୍ଣିତ ରାମ ଓ ଲକ୍ଷ୍ମଣ ଭଳି ନିପଟ ମଫସଲ ଗାଁ ର ମଙ୍ଗଳୁ ସାହୁଙ୍କ ପୁଅ ଦୁଇଟି । ପିଲାଦିନେ ଅତି ଦୁଃଖକଷ୍ଟ ସହ୍ୟକରି ବଢ଼ିଛନ୍ତି । ଦୁଇ ଓଳି ପେଟପୂରା ଖାଇବାକୁ ନ ପାଇ ଖାଉଦ୍ୱାର ଶୁଖି ପିଣ୍ଡା ହୋଇଛନ୍ତି । ପର ଘରେ ରହି ହୁହୁଡ଼ା ହାଙ୍କି ଭଳି ଧାନକୁଟନ୍ତି । ସିନ୍ଦୁରା ଫାଟିଲେ ହଳ ନେଇ ବିଲକୁ ଯାଆନ୍ତି । କାନ୍ଧ ଉପରକୁ ସୂର୍ଯ୍ୟ ଦେବତା ଆସିଗଲେ ବଳଦକୁ ପିଟାଇ ଲଙ୍ଗଳ କୁଆଳୀ ଧରି ଶୌନିଆଙ୍କ ଘରକୁ ଫେରନ୍ତି । ବାଟରେ ପୋଖରୀ ପଡ଼େ, ଅସ୍ତ ତୋଟା ହୋଇ ସବୁ ଗାଧୁଆଟିଏ ପୋଖରୀ ହୁଡ଼ାକୁ ଲାଗିଛି । ପୋଖରୀ ଆଡ଼ିରେ ଥିବା ଝଙ୍କାଳିଆ ଜାମୁ ଗଛରୁ ଡାଳଟିଏ ଭାଙ୍ଗି ଲଛମନ ଦାନ୍ତ ଘଷେ । ନୀଳ ସହିତ ଧଳାରଙ୍ଗର ଚଢ଼େଇଟିଏ ମୁଣ୍ଡ ଉପର ଦେଇ ଉଡ଼ିଯାଏ ଚିଆଁଉ ଚିଆଁଉ କରି । ସେହି ସ୍ୱଚ୍ଛ ମୁକ୍ତ ବିହଙ୍ଗଟିକୁ ଦେଖି ତା ମନରେ ଅସରନ୍ତି ଭାବନାର ଢ଼ୁଆର ଖେଳିଯାଏ । ନିଜକୁ ଶହ ଧିକ୍କାର କରେ । ପୋଡ଼ା ଜୀବନ କ'ଣ ପର ଘରେ ବାରମାସିଆ ରହି ଖାଇବା ତିନ ଦିନର ବାସୀ ପଖାଳ ସଙ୍ଗେ ଲୁଣ ମେଞ୍ଚାଏ, ତା ସହିତ କେତେବେଳେ କେମିତି ପିଆଜ ପାଚୁଡ଼େ ।

ମଙ୍ଗଳୁ ସାହୁର ଦୁଇ ପୁଅ ମଧ୍ୟରେ ବଡ଼ର ନାମ ଲଛମନ ଓ ସାନ ପୁଅର ନାମ ରାମଧନ । ପିଲାଦିନଠାରୁ ଦୁହେଁ ଯାକ ପରଘରେ ମୁଣ୍ଡ ଗୁଞ୍ଜି ରହିଆସିଛନ୍ତି ।

ରାମଧନର ବଡ଼ ଭାଇ ଲଛମନ । ସେ ବିଚରା ଅତି ନିରକ୍ଷର । ଦୁଇ ଅକ୍ଷର ପାଠ ବି ପଢ଼ି ନାହିଁ । ଅତି ସରଳ । ଯିଏ ଯାହା କହିଲେ ସବୁ କଥାକୁ ହଁ ଛଡ଼ା, ନାହିଁ ଶବ୍ଦଟି ତା ତୁଣ୍ଡରୁ ଆଦୌ ବାହାରେ ନାହିଁ । ଅଭାବ ସମୟରେ ଲଛମନ ତା ବାପଠାରୁ ଅଲଗା ହୋଇ ଯାଇଛି । ପର ଘରେ ମୂଲ ଲାଗି ଓଳିଏ ଖାଇ ଆଉ ଓଳିକୁ ପେଟରେ ଓଦା କନା ବାନ୍ଧି ବଡ଼ପୁଅ ଟହଲୁକୁ ଲେଖିଆ କରି, ସ୍ୱ-ଅର୍ଜିତ ସମ୍ପତ୍ତିରେ ନିଜ ଗୋଡ଼ରେ ନିଜେ ଠିଆ ହୋଇ ପାରିଛି ।

ଏବେ ଟହଲୁ ମୁଣ୍ଡକୁ ହାତ ପାଇଲଣି । ଦୁନିଆଁର ଦୁଃଖ, ସୁଖ, ହାନି ଲାଭ ନିଜେ ଅନୁଭବ କଲଣି । ଏ ଅଞ୍ଚଳର ଲୋକେ ଅଭାବ ଅନଟନରେ ଥିଲେ ମଧ୍ୟ ପୁଅ ଷୋହଳପୁରି ସତର ଚାଲିଲେ ଓ ଝିଅ ଘର ଯୋଗି ହେଲେ ହାତକୁ ଦିହାତ କରାଇ ଦିଅନ୍ତି ।

ଟହଲୁକୁ ଷୋହଳ ପୁରି ଯେମିତି ସତର ଚାଲିଛି, ବାପ ତା ପାଇଁ ଆଣିଛି ଘରକୁ ବୋହୂଟିଏ । ଥିଲାବାଲା ଘରେ ସମ୍ବନ୍ଧ କରିଛି । ଜାତିଆଣ ପ୍ରଥା ଅନୁସାରେ ପୁଅଘର ବେଦୀର ସମସ୍ତ ଖର୍ଚ୍ଚ ବହନ କରିବ । ଯୌତୁକ ପ୍ରଥାକୁ ସେମାନେ ଘୃଣା କରନ୍ତି । ବରଘର ବିବାହର ସମସ୍ତ ଖର୍ଚ୍ଚ ତୁଲାଇ ଥାଆନ୍ତି, ଏପରିକି ଝିଅଘରେ ବରଯାତ୍ରୀ ପହଞ୍ଚିବା ପରେ ଖାଇବା ଓ ଝିଅ ଘରକୁ ଶାଢ଼ୀଠାରୁ ଆରମ୍ଭକରି ଡାଲି, ଚାଉଳ ଯୋଗାଇବା ପୁଅ ତରଫରୁ ହୋଇଥାଏ । ଏହି ପ୍ରଥା ଯାହାକି ପୁରୁଷାନୁକ୍ରମେ ଚାଲି ଆସିଛି, କିନ୍ତୁ ଟହଲୁର ବିଭାଘରେ ବ୍ୟତିକ୍ରମ ଘଟାଇଛି ତାହାର ଶ୍ୱଶୁର । ସେ ହାଇଁ ଘରୁ କୌଣସି ଜିନିଷ ଆଣିବା ପାଇଁ ମନା କରି ଦେଇଛି । ସେ ପୂର୍ବ ପ୍ରଚଳିତ ଜାତିଆଣ ପ୍ରଥାକୁ ବାସନ୍ଦ କରିଛି । ଝିଅ ବିଦାକି ବେଳେ ନିଜର ଶକ୍ତି ସାମର୍ଥ୍ୟ ଅନୁସାରେ ଘରକରଣା ଜିନିଷ ଦେଇ ବିଦାୟ ଦେଇଛି ଟହଲୁର ଶ୍ୱଶୁର ।

ମୂଲଲାଗି ଟଙ୍କା ଆଣିଛି । ବେଳ ପଡ଼ିଲେ ଅଭାବୀ ସ୍ୱଭାବ ନଷ୍ଟ ହୁଏ । କେତେବା ମୂଲ ପାଇବ ଟହଲୁ । ଘରେ ସାତ ପ୍ରାଣୀ କୁଟୁମ୍ବ । ସମୟ ସମୟରେ ଅଧ କିଲୋ ସରଜ ଆଣି ପଖାଳ ସାଙ୍ଗେ ଲୁଣ ଲଙ୍କା ମାରି ଖାଇ ଦିଅନ୍ତି ।

ନୂଆଗାଁରେ ବର୍ଷକୁ ଥରେ ହୋଲି ପରେ ମେଳା ଲାଗେ । ସାତ ଆଠ ଦିନ ବଜାର୍ ଦାଣ୍ଡ ଜନଗହଳିରେ ପରିପୂର୍ଣ୍ଣ ହୋଇ ଯାଏ । ଦୂରଦୂରାନ୍ତରୁ ଦୋକାନୀମାନେ ଆସି ଦୋକାନ ସଜାଇ ବସନ୍ତି । ଆଖ ପାଖ ବାର ଚଉଦ ମାଇଲର ଯାତ୍ରୀମାନେ ନିଜର ପସନ୍ଦ ମୁତାବକ ଜିନିଷ କିଣି ନିଅନ୍ତି ।

ଲଛମନ ପରିବାରର ସମସ୍ତଙ୍କ ମନ ସନ୍ତୁଷ୍ଟ କରିବା ପାଇଁ ଟଙ୍କା କରଜ କରି ଆଣିଛି । ସେହି ଟଙ୍କାରେ ମେଳା ବୁଲାଇବା ପାଇଁ ତାର ଝିଅ, ବୋହୂମାନଙ୍କୁ ନେଇଛି । ମନଲାଖି ଜିନିଷ ନେଇ ପାରିନି ବୋଲି ବୋହୂର ମନରେ ଭାରି ଦୁଃଖ ।

ମେଳା ସରିଛି । ବୋହୂ ମନଲାଖି ଜିନସ ନେଇ ନାହିଁ । ଟହଲୁ ମନରେ ତାର ସ୍ତ୍ରୀର କଥା କୁଠାରଘାତ କରିଛି

ପାଖରେ ଶୁଏ, କାନରେ କୁହେ, ତା କଥାକୁ ଅନ୍ୟଥା ହୁଏ ? ଯେଉଁ ମା ଦଶମାସ ଦଶଦିନ ପେଟରେ ଭରି ଏତୁଟିରୁ ଆଜି ଭେଣ୍ଡିଆ କରିଛି, ସେ ଭାବି ନ ଥିଲା, ଟହଲୁ ଦିନେ ତା ହାତମୁଠାରୁ ଖସିଯିବ ।

ଟହଲୁର ମୁଣ୍ଡକୁ ହାତ ପାଇ ଯାଇଛି । ବାପ ମା'ଙ୍କଠାରୁ ପୃଥକ ହୋଇଛି । ସେ ପରଘରେ ମୂଲ ଲାଗି ଚାଉଳ, ଟଙ୍କା, ମାଣ୍ଡିଆ ଆଣି ତା'ର ସ୍ତ୍ରୀକୁ ଦେଇଛି । ତାର ସ୍ତ୍ରୀ ସେଗୁଡ଼ିକ ସାଇତି ରଖେ ଆଗାମୀ କାଲି ପାଇଁ । ସବୁଦିନ ପରଘରେ ମୂଲଲାଗି ପେଟ ପୋଷିବା କଥାଟାକୁ ଟହଲୁ ବିଲକୁଲ ପସନ୍ଦ କରେନାହିଁ । ସ୍ୱାଧୀନ ଭାବରେ କିଛି ଗୋଟାଏ ବ୍ୟବସାୟ କରିବା ପାଇଁ ତା ମନ ସବୁବେଳେ ବ୍ୟାକୁଳ ହୋଇ ଉଠେ କିନ୍ତୁ ଚିନ୍ତା କରିବା ଛଡ଼ା ଅଧିକ କରିବ ବା କ'ଣ । ଜମିତ ଗୋଟେ ନାହିଁ । ତେଣୁ ସେ ଚାଷ କରିବ ନା ବ୍ୟବସାୟ କରିବ ? ଏହିପରି ବ୍ୟତିବ୍ୟସ୍ତ ଚିନ୍ତାରୁ ଟହଲୁକୁ ଓଡ଼ିଶା ସରକାରଙ୍କ ଗ୍ରାମାଞ୍ଚଳ ଦରିଦ୍ରତମ ପରିବାରଙ୍କ ପାଇଁ ଅର୍ଥନୈତିକ କାର୍ଯ୍ୟକ୍ରମ ପୁରାପୁରି ଭାବରେ ସାହାଯ୍ୟ କରିଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ଗ୍ରାମର ସମସ୍ତେ ଏକାଠି ବସି ୧୦ଟି ଦରିଦ୍ରତମ ପରିବାର ବାଛିବେ । ଯେଉଁ ପରିବାର ହାତରେ ଆୟ କରିବା ପାଇଁ ଆଦୌ ସମ୍ବଳ ନ ଥିବ ଏବଂ ଯାହାର ବାର୍ଷିକ ଆୟ ୧,୨୦୦ ଟଙ୍କାରୁ ଊଣା ହୋଇଥିବ ସେହି ପରିବାର ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇ ପାରିବ । ଯଥା ସମୟରେ ଟହଲୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଛି । ଠାକୁରେ ତାର ଡାକ ଶୁଣିଛନ୍ତି । ମନରୁ ଚିନ୍ତା ଦୂର ହୋଇଛି । ସରକାରଙ୍କ ତରଫରୁ ତାକୁ ମିଳିଛି ହଳେ ବଳଦ ଓ ଶଗଡ଼ଗାଡ଼ି ଗୋଟିଏ । ଟହଲୁ ଅନ୍ୟମାନଙ୍କ ଜିନିଷପତ୍ର ତାର ଶଗଡ଼ରେ ବୋଝେଇ କରି ବିଭିନ୍ନ ସ୍ଥାନକୁ ପହଞ୍ଚାଇ ଦେଉଥାଏ । ସେଥିରୁ ସେ ଦିନକୁ ୨୫ ରୁ ୩୦ ଟଙ୍କା ରୋଜଗାର କରିଥାଏ । ବଳଦ ଯୋଡ଼ିକର ଯତ୍ନ ସହିତ ଶଗଡ଼ର ମରାମତି ପ୍ରତ୍ୟେକଟିରେ ଟହଲୁ ସବୁବେଳେ ନଜର ରଖିଥାଏ । ବଳଦ ଯୋଡ଼ିକର ନାକରୁ କାନ ପର୍ଯ୍ୟନ୍ତ ନୂଆ ପିନ୍ଧାଇ ଦେଇଛି । ଶଗଡ଼ରେ ବଳଦଙ୍କୁ ଯୋଚି ଚାଲିଲାବେଳେ ପିନ୍ଧାଇଥିବା ଘୁଙ୍ଗୁରର ଝୁଣ୍ଟୁ ଝୁଣ୍ଟୁ ଶବ୍ଦ ବାହାରେ । ଟହଲୁର ଗୁଣୁଗୁଣୁ ସ୍ୱରରେ ବଳଦ ଯୋଡ଼ିକ ମୁଣ୍ଡ ହଲାଇ ଚାଲନ୍ତି । ସେଇ ଗତିରେ ତାଳଦେଇ ମଧୁର ସ୍ୱର ତୋଳିଦିଏ ନାକର ଝୁମ୍ପା । ମାସ କେଇଟା ଅବିଶ୍ରାମ ଖଟଣୀରେ ଟହଲୁ ଝଡ଼ି ଯାଇଛି । ବସନ୍ତ ଆସିବା ପୂର୍ବରୁ ଗଛରୁ ପତ୍ର ଝଡ଼ିଯାଏ । ଗଛ ଲଣ୍ଡା ହୋଇଯାଏ । ସେଇଗଛ ଶେଷ ବସନ୍ତରେ ଉନ୍ମାଦନା ଭରିଦେବ, ମାତ୍ର ଆଗରେ ଫୁଲକୁ ସଜେଇ । ପ୍ରକୃତି ତାର ରୂପ ସଜାଇଦିଏ ଜୀବ ଜଗତରେ ରହି । ସମଦୁଃଖ ସୁଖରେ ଭାଗୀହୋଇଥାଏ ସେ । ସମୟର ଗତି ସଙ୍ଗେ ପାଦ ମିଳାଇ ଚାଲେ ଟହଲୁ ।

ପରଘରେ ବାର ମାସିଆଠାରୁ, ଶଗଡ଼ ଉପରେ ଶୀତଟିରେ ଗୋଟିଏ ଚଦର ଘୋଡ଼ିହୋଇ ଦିନ କାଟିଛି । ହାଡ଼ଭଙ୍ଗା ଖଟଣିରେ ମାଲିକ ସନ୍ତୁଷ୍ଟ ହୋଇ ନି । ସକାଳ ହେଲେ ବାସି ତୋରାଣୀ ପିଇ ଚାଲିଯାଏ କାମ କରିବାକୁ । ଆସିଲା ବେଳକୁ ପେଟ ଲାଗିଯାଏ ପିଠିରେ । ଘରେ ଯାଉ ଦେଖେ ଚୁଲି ଅଜଳା । ସ୍ତ୍ରୀ ତାର ଚାହିଁ ରହିଛି ସ୍ୱାମୀ ଚାଉଳ ଆଣିଲେ ରୋଷାଇହେବ ।

ଟହଲୁ ଆଜି ନିଜ ଗୋଡ଼ରେ ଠିଆ ହେବା ପାଇଁ ଶିଖିଲାଣି । ସରକାରଙ୍କଠାରୁ ଯଥେଷ୍ଟ ସାହାଯ୍ୟ ପାଇଛି । ପାଞ୍ଚଜଣଙ୍କ ସଙ୍ଗେ ମିଶି ଗାଁର ହାଲଚାଲ ବୁଝିଲାଣି । ଟହଲୁର ସାମାଜିକ ଆର୍ଥିକ ପରିବର୍ତ୍ତନ ଦେଖି ଆଖପାଖ ଗାଁର ଲୋକେ ସରକାରଙ୍କ ଇ. ଆର୍. ଆର୍. ପି. କାର୍ଯ୍ୟକ୍ରମକୁ ଭୂରି ଭୂରି ପ୍ରଶଂସା କରୁଛନ୍ତି । ଟହଲୁ ପୁତ୍ର ସନ୍ତାନଟିଏ ମଧ୍ୟ ଲାଭ କରିଛି । ସେ ଇତି ମଧ୍ୟରେ ନୂଆଗାଁ ଡାକ୍ତରଖାନାକୁ ଯାଇ ଡାକ୍ତରବାବୁଙ୍କୁ ପରିବାର କଲ୍ୟାଣ ବିଷୟରେ ପରାମର୍ଶ କରି ସାରିଛି । ଟହଲୁ କୁହେ, ଯିଏ ତାର ଦାରିଦ୍ର୍ୟ ଅବସ୍ଥାକୁ ସୁଧାରି ଦେଇଛନ୍ତି, ତାଙ୍କ ପାଇଁ ସେ କ'ଣ କରିବ । ସେ କୁହେ ସରକାରଙ୍କୁ ସହଯୋଗ କର, ସାହାଯ୍ୟ କର, ତାହାହେଲେ ଯାଇ ଗରିବ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ଦୂର ହେବ । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଇ. ଆର. ଆର. ପି. କାର୍ଯ୍ୟକ୍ରମ ଦରିଦ୍ରତମ ପରିବାରଙ୍କ ମନରେ ଭରି ଦେଇଛି ନୂତନ ଆଶା, ଆକାଂକ୍ଷା, ନୂତନ ଦିଗ୍‌ଦର୍ଶନ, ନୂତନ ଚେତନା ଏବଂ ନୂତନ ଉନ୍ମାଦନା । ଜନମୁଖରେ ଗୋଟିଏ କଥା ଗରିବ ଲୋକମାନଙ୍କ ସର୍ବବିଧ ଉନ୍ନତି ହେଉ । ଗାଁଗହଳର ଉନ୍ନତି ଦେଶର ଉନ୍ନତି । ଆଜି ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ୨୦ ଦଫା କାର୍ଯ୍ୟକ୍ରମ ସାଙ୍ଗକୁ ଓଡ଼ିଶା ସରକାରଙ୍କ ଇ. ଆର୍. ଆର୍. ପ. କାର୍ଯ୍ୟକ୍ରମ ସମାଜର ଆର୍ଥିକ ଦୁର୍ବଳ ତଥା ଅବହେଳିତ ଲୋକମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ବଳିଷ୍ଠ ପଦକ୍ଷେପ ନେଇଛି । ଚିର ଅବହେଳିତ ଟହଲୁ ଆଜି ସରକାରଙ୍କଠାରୁ ସାହାଯ୍ୟ ପାଇ ଆଗେଇ ଚାଲିଛି ଉନ୍ନତି ପଥରେ । ଆଜି ସେ ନିଜେ, ତାହାର ସ୍ତ୍ରୀ, ଛୋଟପୁଅ ଅତି ସୁଖରେ ଜୀବନ ଯାପନ କରୁଛନ୍ତି ।

ସଂପାଦକ, ଉତ୍କଳ ସଂସ୍କୃତି ସଂସଦ,
ଗ୍ରା:/ପୋ: ନୂଆଗାଁ,
ଜିଲ୍ଲା:—ସୁନ୍ଦରଗଡ଼ ।

ଓଡ଼ିଶା ପଛରେ ପଡ଼ିବ ନାହିଁ । ପୂର୍ବରୁ ଓଡ଼ିଶା କହିଲେ ଭାରତର ସବୁଠାରୁ ପଛୁଆ, ଅବହେଳିତ ରାଜ୍ୟ ବୋଲି ଯେଉଁ ଧାରଣା ଥିଲା, ସେ ଧାରଣା ଆଉ ରହିବ ନାହିଁ । ପ୍ରବଳ ବେଗରେ ଓଡ଼ିଶାକୁ ଆଗେଇ ନେବାକୁ ହେବ ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ



# ଉତ୍କଳର ଦୋଳୋତ୍ସବ

ଶ୍ରୀ ଗଙ୍ଗାଧର ବାରିକ

"ଦୋଳାୟାଂ ଦୋଳଗୋବିନ୍ଦଂ, ମଞ୍ଚସ୍ଥଂ ମଧୁସୂଦନମ୍
ରଥସ୍ଥଂ ବାମନଂ ଦୃଷ୍ଟ୍ୱା, ପୁନର୍ଜନ୍ମ ନ ଲଭ୍ୟତେ ।"

ବାସନ୍ତିକ ଦୋଳ ଉତ୍ସବର ବୈଶିଷ୍ଟ୍ୟ ଏହି ଶ୍ଳୋକରୁ ପ୍ରତିପାଦିତ । ପ୍ରବାଦ ରହେ–ବସନ୍ତକାଳ ଆଗମନରେ ଦୈତ୍ୟରାଜ ହିରଣ୍ୟକଶିପୁର ମେଷାକୃତି ଭଗିନୀ 'ହୋଲିକା' ଆସୁରିକ ମାୟା ବିସ୍ତାର କରି ଋଷି, ମୁନି, ଦେବତା ତଥା ପ୍ରଜାଗଣଙ୍କ ଶରୀରରେ ବିଶାକ୍ତ ବିସ୍ଫୋଟକର ସୂତ୍ରପାତ କରୁଥିଲା ଏବଂ ବ୍ରଜ କିଶୋର ଶ୍ରୀକୃଷ୍ଣ ଓ ବ୍ରଜ କିଶୋରୀଗଣଙ୍କ ଅନଙ୍ଗ ଉତ୍ସବରେ ପ୍ରଧାନ ଅନ୍ତରାୟ ସୃଷ୍ଟି କରୁଥିଲା । ଭକ୍ତ ବାଞ୍ଛା ପୂରଣକାରୀ କୃଷ୍ଣ ତାଙ୍କର ବୈଷ୍ଣବୀ ଶକ୍ତି ପ୍ରଭାବରେ ଉକ୍ତ ଦାନବୀକୁ ବଧ କରିଥିଲେ । ଏହି ଘଟଣାର ସ୍ମରଣାର୍ଥେ ସାରା ଭାରତରେ ରାକ୍ଷସୀ ହୋଲିକାର ଦହନ ଲୀଳା ଅନୁଷ୍ଠିତ ହୋଇ ଆସୁଛି ।

"ବସନ୍ତ ଋତୁ ସଂବାଦ ମିଶ୍ରମନ୍ଦ ସୁଖାବହ ।
ବୃନ୍ଦାବନ ଗୋପ ଗୋବିନ୍ଦ ରସାଳ ଫଳମୂରନମ୍ ।"

ଏହି ସ୍ତୁତି ପାଠକରି ଗୋପାଙ୍ଗନାଗଣ ଅଷ୍ଟଗନ୍ଧଯୁକ୍ତ ଫଲ୍‌ଗୁ (ଫଗୁ) ବା ଅବିର କୃଷ୍ଣଙ୍କୁ ସମର୍ପଣ କରି ଉଲ୍ଲସିତ ଆନନ୍ଦରେ ପରସ୍ପରେ ଅବିର ବୋଳି ହେଉଥିଲେ । ଅବିର କଣ୍ଡୁ, କୃଷ୍ଣ, ବ୍ରଣ ଓ ବସନ୍ତ ରୋଗର ବିଷ ନାଶକ ଅଟେ । ଏହା ବାୟୁମଣ୍ଡଳ ସ୍ଥିତ ବସନ୍ତ ବୀଜାଣୁଗୁଡ଼ିକୁ ନଷ୍ଟ କରିଥାଏ ବୋଲି ବୈଜ୍ଞାନିକ ମତ ରହିଛି ।

ଦୋଳଯାତ୍ରା ଫାଲ୍‌ଗୁନ ମାସ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ଆମ ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରରେ ମଧ୍ୟାହ୍ନ ଧୂପ ପରେ ଦେବତାମାନେ ରତ୍ନଦର୍ଣ୍ଣ ବସ୍ତ୍ରପିନ୍ଧି ଚନ୍ଦନ ଲାଗି ହୁଅନ୍ତି । ଦକ୍ଷିଣ ଗୃହକୁ ଲକ୍ଷ୍ମୀ (ଶ୍ରୀ ଦେବୀ) ଓ ସରସ୍ୱତୀ (ଭୂଦେବୀ) ଶ୍ରୀ ମନ୍ଦିରରେ ବିଜେକରି ଶ୍ରୀ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଦୋଳ ଗୋବିନ୍ଦଙ୍କସହ ଗୁଡ଼େଇ ଦେଖି ହୁଅନ୍ତି । ଶ୍ରୀକ୍ଷେତ୍ରର ପ୍ରତିଷ୍ଠିତ ଦେବତା ଲୋକନାଥ, ଯମେଶ୍ୱର, ମାର୍କଣ୍ଡେୟ, ନୀଳକଣ୍ଠ ଓ କପାଳମୋଚନଙ୍କ ଗାହଣରେ ବିମାନରେ ବସନ୍ତ ଉଦ୍ୟାନ ଜଗନ୍ନାଥ ବଲ୍ଲଭକୁ ଯାଆନ୍ତି । ଏହିଭଳି ତ୍ରୟୋଦଶୀ ପର୍ଯ୍ୟନ୍ତ ଉକ୍ତ ଉତ୍ସବ ଅନୁଷ୍ଠିତ ହୁଏ । ଚତୁର୍ଦ୍ଦଶୀ ଦିନ ଅଗ୍ନି ଉତ୍ସବ ପାଳନ କରାଯାଏ । ପୂର୍ଣ୍ଣିମା ଦିନ ଭୂଦେବୀ, ଶ୍ରୀଦେବୀ ଓ ଦୋଳ ଗୋବିନ୍ଦ ଦୋଳ ବେଦୀରେ ବିଜେ ହୁଅନ୍ତି । ବିମାନଧାରୀମାନେ ଘଣ୍ଟ, ଛତ୍ର ଓ ଗୁମର ସଙ୍ଗେ କାହାଳୀଆଦି ବାଦ୍ୟ ବଜାଇ, ସେମାନଙ୍କୁ ନେଇ ଦେଉଳସ୍ଥିତ ଦୋଳମଣ୍ଡପର ଚତୁର୍ଦ୍ଦିଗରେ ସାତ ଥର କରି ଏକୋଇଶ ଥର ପ୍ରଦକ୍ଷିଣ କରନ୍ତି । ଦୋଳବେଦୀରେ ଅବସ୍ଥିତ ଶ୍ରୀଗୋବିନ୍ଦଙ୍କ ଦର୍ଶନ ଅତୀବ ପୁଣ୍ୟପ୍ରଦ ଅଟେ ।

ଭେଷଜ ତନ୍ତ୍ର କହେ—"ବସନ୍ତେ ଅଗ୍ନି ସେବନମ୍ ।" ଅର୍ଥାତ୍ ମାଘ ମାସ ପୂର୍ଣ୍ଣମୀଠାରୁ ଫାଲ୍‌ଗୁନ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ରାତିରେ ଅଗ୍ନି ପ୍ରଜ୍ଜ୍ୱଳନ କରିବା ବିଧେୟ । ମାଘ ମାସର ପରବର୍ତ୍ତୀ ଓ ଚୈତ୍ରମାସର ପୂର୍ବବର୍ତ୍ତୀ ସ୍ୱନ୍ଧ୍ୟାୟଣ ମାସରେ ଚନ୍ଦ୍ର ଫଲ୍‌ଗୁ ନକ୍ଷତ୍ରରେ ଅବସ୍ଥାନ କରୁଥିବାରୁ ଉକ୍ତ ପୂର୍ଣ୍ଣିମା ଫଗୁ ପୂର୍ଣ୍ଣିମା ନାମରେ ବିଦିତ ଏବଂ ଦୋଳ ମଣ୍ଡପରେ ଦେବତାମାନଙ୍କୁ ଦୋଳାରେ ବସାଇ ଉତ୍ସବ ପାଳନ କରୁଥିବାରୁ ଏହାର ଅନ୍ୟନାମ ଦୋଳଯାତ୍ରା ଅଟେ । କିନ୍ତୁ କାଳର ଗତି ଅନୁଯାୟୀ ପରିବର୍ତ୍ତିତ ପରିସ୍ଥିତି ସ୍ରୋତରେ ପଡ଼ି ଏହି ଉତ୍ସବ ନାନାଭାବରେ ରୂପାନ୍ତରିତ ହୋଇଥିଲେ ହେଁ ଏହା ଭାରତୀୟ ସାର୍ବଜନୀନ ଉତ୍ସବର ଗୌରବ ବହନ କରିଛି । ଏହି ଉପଲକ୍ଷେ ଶ୍ରୀ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଦୋଳ ମଣ୍ଡପରେ ବିଜେ ହୁଅନ୍ତି । ସେଠାରେ ତାଙ୍କର ରାଜବେଶ ଅନୁଷ୍ଠିତ ହୁଏ ।

ଦ୍ୱାପର ଯୁଗର ଅସ୍ତାୟମାନ ମୁହୂର୍ତ୍ତରେ ଏକ ବସନ୍ତକାଳକୁ ଉପଲକ୍ଷ କରି ନନ୍ଦନନ୍ଦନ ଭଗବାନ ଶ୍ରୀକୃଷ୍ଣ ଗୋପଗୋପୀଙ୍କ ଗହଣରେ ଯେଉଁ ଦିନମାନଙ୍କରେ ହୋରି ଖେଳିଥିଲେ, ଋତୁଚକ୍ରର ସମାବର୍ତ୍ତନରେ ଏବର୍ଷ ଚଳିତ ବସନ୍ତ କାଳରେ ପୁଣି ସେହି ଉତ୍ସବର ଦିନ ଉପସ୍ଥିତ ହୋଇଛି । ଋତୁରାଜ ବସନ୍ତର ଜୀବନ-ମଧ୍ୟାହ୍ନରେ ଦୋଳ ଉତ୍ସବ ପଡୁଥିବାରୁ ଆର୍ଯ୍ୟ ବା ହିନ୍ଦୁ ସଂସ୍କୃତି ପ୍ରକୃତିର ଏହି ରାସଲୀଳାକୁ ଆହୁରି ମଞ୍ଜୁଳ, ମଧୁମୟ ଓ ମହିମାମଣ୍ଡିତ କରିବାପାଇଁ ଶ୍ରୀକୃଷ୍ଣଙ୍କ ଆଚରିତ ମହୋତ୍ସବ ପାଳନ କରି ଆସୁଛି । ପ୍ରତିବର୍ଷ ଭାରତର ଜନସାଧାରଣ ବସନ୍ତକାଳ ଓ ଫଗୁଖେଳର ମାଧୁରୀ ଏକତ୍ରେ ଉପଲବ୍ଧି କରି ଆସୁଛନ୍ତି । ଏତଦୁପଲକ୍ଷେ ଶ୍ରୀକୃଷ୍ଣଙ୍କ ପ୍ରବର୍ତ୍ତିତ ଆଦର୍ଶ ଗୋପାଳନାର କ୍ଷୀଣ ସ୍ମୃତି ସ୍ୱରୂପ ଗୋ ଜାତିର ସେବା ଆରାଧନା ମଧ୍ୟ ହୋଇ ଆସୁଛି ।

ସାଧିଲେ ଗୋ ଜାତି ଉନ୍ନତି
ମେଣ୍ଟିବ ଲୋକଙ୍କ ଦୁର୍ଗତି ।
ପୂର୍ବୀ ଗୋ ହିତେ ଆମଦେଶ
ସମୃଦ୍ଧି ଲଭିବ ଅଶେଷ ।
ଗୋ ହିତେ ଦେଶର କଲ୍ୟାଣ,
ହେବ ବର୍ଦ୍ଧିତ ନିଶ୍ଚେ ଜାଣ ।
ଯିଏ ହୋଇବ ଆଗୁସାର
ନାଶଯିବ ତା ଦୁଃଖ ଭାର ।
ଗୋ ଜାତି ହେଲେ ସୁପ୍ରସନ୍ନ
ସୁଲଭ୍ୟ ହେବ ବସ୍ତ୍ର ଅନ୍ନ ।

ଅତି ନିଦାରୁଣ ଶୀତଋତୁର ଅସହ୍ୟ ଯାତନା ଭୋଗି ଧରାବାସୀ ତେଜ ବୀର୍ଯ୍ୟ ହୀନ ହୋଇ ପଡ଼ିଥିଲେ । ଇତ୍ୟବସରରେ କେତେ ନିଧି ଘେନି ବିଧିରେ ବସନ୍ତ ଆସି ଉପସ୍ଥିତ ହେଲା । ବିଭବମୟୀ ପ୍ରକୃତିରାଣୀ ବସନ୍ତ ସ୍ପର୍ଶରେ ଗରୀୟସୀ ହୋଇ ଉଠିଲା । ତାହାର ପରଶ ଲଭି ଜନଗଣଙ୍କ ଦେହ ମନ କ୍ରମେ ପୁଲକିତ ହେଲା । ଦୋଳ ଉତ୍ସବ ହେଉଛି ଏହି ପୁଲକ ଉପଲବ୍ଧି କରିବାର ପ୍ରଶସ୍ତ ସମୟ । ତେଣୁ ଦୋଳକୁ କେତେକ ବସନ୍ତ ଉତ୍ସବ ଓ ଆଉ କେତେକେ ମଦନ ଉତ୍ସବ ବୋଲି କହନ୍ତି । କିନ୍ତୁ ଆମ ରାଜ୍ୟରେ ଏହାର ପ୍ରଚଳିତ ନାମ ଦୋଳଯାତ୍ରା ଅଟେ ।

ଦୋଳଉତ୍ସବ ଯାଦବ କୁଳର ସର୍ବଶ୍ରେଷ୍ଠ ପର୍ବ । କାଳକ୍ରମେ ଏହା ଭାରତର ସାର୍ବଜନୀନ ହିନ୍ଦୁପର୍ବରେ ପରିଗଣିତ ହୋଇ ପାଳିତ ହୋଇ ଆସୁଛି । ଏ ପର୍ବର ଆରାଧ୍ୟ ଦେବତା ଶ୍ରୀକୃଷ୍ଣ । ଏହାର ଶାସ୍ତ୍ରୀୟ ପାଳନ ବିଧି ହେଉଛି—

ଜଗତାମୁପକାରାୟ, ଗବାଂ ମଙ୍ଗଳ ହେତବେ
ସୁବୃଷ୍ଟି ଶସ୍ୟଲାଭାୟ, କୁର୍ଯ୍ୟାତ୍ ଦୋଳ ମହୋତ୍ସବମ୍ ।
ଫାଲ୍‌ଗୁନେ ମାସୀ ପୂର୍ଣ୍ଣିମାୟାଂ ଉଦୟାଦି ସମାଚରେତ୍
ତତ୍ରାହିଗୋପାଃ ସର୍ବେବୈ କୁର୍ଯ୍ୟାତ୍ କୃଷ୍ଣନିମନ୍ତ୍ରଣମ୍ ।
ଗୃହୀତ୍ୱା ନୂତନଂ ବସ୍ତ୍ରଂ ପାୟସୈଃ ପିଷ୍ଟକୈସ୍ତଥା
ଧୂପ ଚନ୍ଦନ ଦୀପୈଶ୍ଚ ଶ୍ରୀକୃଷ୍ଣଂ ପୂଜୟନ୍ତି ହି ।
ଗୀତ ବାଦ୍ୟ ତଥା ନୃତ୍ୟୈ ପାଳୟେତ୍ ଦିବସଂମୁଦା
ଗୋ ଗୋଷ୍ଠେଚ ଗବାଂଚୈବ କୁର୍ଯ୍ୟାତ୍ ତଥୈବ ପୂଜନମ୍ ।

ଭଗବାନ ଶ୍ରୀକୃଷ୍ଣ ଗୋପପୁରରେ ବାଲ୍ୟାବସ୍ଥା ଅତିବାହିତ କରିଥିବା କାଳରେ ଯାଦବ ବାଳକମାନଙ୍କ ସହ ନିଜର ବାଲ୍ୟଲୀଳା ପ୍ରକଟିତ କରିଥିଲେ । ବନଭୂମିର ଶ୍ୟାମ ତମାଳ ବନରେ ଧେନୁ ଚରାଇ ଗୋପାଳବାଳକମାନଙ୍କ ସହ ସୈଶାଖଣ୍ଡ ପ୍ରଦର୍ଶନ କରୁଥିଲେ । ଚପଳମତି ସାଧାରଣ ଶିଶୁ ଭଳି ବାଲିଧୂଳିରେ କ୍ରୀଡ଼ା କରୁଥିଲେ । ବନଫୁଲରେ ଜୁଡ଼ା ସଜାଇ ସନ୍ଧ୍ୟାକାଳରେ ଯଶୋଦାଙ୍କ କୋଳକୁ ବାହୁଡ଼ି ଆସୁଥିଲେ । ଏହିପରି ଅନେକ ଦୃଶ୍ୟ ଅବତାରଣା ଆମର ଭାଗବତରେ ଅବତାରଣା କରାଯାଇଛି । ଏହି ଦୋଳପର୍ବ ପାଳନ କାଳରେ ଯାଦବ କୁଳର ଲୋକେ ବଂଶୀ ଓ ସିଙ୍ଗା ବାଦନ କରିବା ସଙ୍ଗେ ସଙ୍ଗେ ଲଉଡ଼ି ଖେଳି ଏହି ମହନୀୟ ପରମ୍ପରାକୁ ସ୍ମରଣ କରିଥାଆନ୍ତି । ବେଦ, ପୁରାଣ ଓ ଉପନିଷଦର ବର୍ଣ୍ଣନା ଅନୁସାରେ ଏହି ଦୋଳ ଉତ୍ସବର ମହନୀୟତା ଅନସ୍ୱୀକାର୍ଯ୍ୟ ।

ଗ୍ରାମ./ପୋ. —ଗୁଦବାଲି
ଜି. ବାଲେଶ୍ୱର

ଆମ ସମସ୍ତଙ୍କ ଚେଷ୍ଟାରେ ଓଡ଼ିଶାର ଭବିତବ୍ୟ ଅଧିକ ଉଜ୍ଜ୍ୱଳ ହେବ ଏବଂ ଓଡ଼ିଶା ଭାରତରେ ଏକ ଗୌରବମୟ ସ୍ଥାନ ଅଧିକାର କରିବ ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ



ଜିଲାପାଳ ସମ୍ମିଳନୀରେ ମୁଖ୍ୟ ଶାସନ ସଚିବ





ଭୁବନେଶ୍ୱର ରମାଦେବୀ ମହିଳା ମହାବିଦ୍ୟାଳୟର ବାର୍ଷିକ ଉତ୍ସବରେ ରାଜ୍ୟପାଳ



# ସଫଳ କାହାଣୀ

## ସୁଖର ସ୍ୱପ୍ନ

ଅଦିନ ମେଘର ମୂଷଳ ଧାର ବର୍ଷାରେ ବନ୍ୟା ଆସିବା ପରି ପଚିଶ ବର୍ଷ ବୟସ ଶ୍ରୀମତୀ ପୂର୍ଣ୍ଣବାସୀ ଗୌଡ଼ର ଜୀବନରେ ଆସିଲା ଦୁର୍ଦ୍ଦିନର ଝଞ୍ଜା । ସ୍ୱାମୀ ତାର ଅଜଣା ପୁରକୁ ଚାଲିଗଲେ । ବିଧବା ଜୀବନରେ ଦୁଇ ପୁଅ ଓ ଦୁଇ ଝିଅର ବୋଝ ସମ୍ଭାଳିବାକୁ ତାର ଉପାୟ କିଛି ନ ଥିଲା । ବଡ଼ ପୁଅ କୋଡ଼ିଏ ବର୍ଷର କିନ୍ତୁ ଅଭାବରେ ପଡ଼ି ପାଠପଢ଼ା ବନ୍ଦ କଲା । ପେଟ ପାଇଁ ପୂର୍ଣ୍ଣବାସୀ ଆଦିବାସୀ ବହୁଳ ଦେବଗନ୍ଧଣା ଗ୍ରାମରେ ଛୋଟିଆ ଦୋକାନଟିଏ ଦେବାକୁ ମଧ୍ୟ ଆର୍ଥିକ ସମ୍ବଳ ପାଇ ନ ଥିଲା । ଜାତିରେ ସେ ଗୌଡୁଣୀ । ଅନ୍ୟର ବିଲ ବାଡ଼ିରେ କାମ କରି ଆଣି ଚାରୋଟି ପିଲାଙ୍କୁ ବଞ୍ଚାଇ ଥିଲା । ଲମତାପୁଟ ବ୍ଲକ୍‌ର ବନମାଳିପୁଟ ଗ୍ରାମ-ପଞ୍ଚାୟତରେ ୧୦୦୦ ଲୋକ ବସ‌ଂ ଭରା ଗ୍ରାମ ଦେବଗନ୍ଧଣା ଗାଁ ନନ୍ଦପୁର ଠାରୁ ୭ କି. ମି. ଦୂରରେ ଅବସ୍ଥିତ । ଆଦିବାସୀ ବହୁଳ ଗ୍ରାମରେ ପୂର୍ଣ୍ଣବାସୀକୁ ସାହା ଭରସା ହେବାକୁ ପ୍ରଗତିଶୀଳ ସରକାରଙ୍କର ନୂତନ ବିଂଶସୂତ୍ରୀର ଆର୍ଥିକ ଥଇଥାନ କାର୍ଯ୍ୟକ୍ରମ ଆଗେଇ ଆସିଲା । "କ୍ଷୁଦ୍ର ବ୍ୟବସାୟ" ଯୋଜନା ଦ୍ୱାରା ପୂର୍ଣ୍ଣବାସୀଙ୍କୁ ସାହାଯ୍ୟ ଦେବା ପାଇଁ ଲମତାପୁଟର ବି. ଡି. ଓ. ଏବଂ ଗ୍ରାମ ସେବକ ତାର ନାମକୁ ସୁପାରିଶ କଲେ । ସମନ୍ୱିତ ଗ୍ରାମ ଉନ୍ନୟନ ବା ଆଇ. ଆର. ଡି. କାର୍ଯ୍ୟକ୍ରମ ଦ୍ୱାରା ୩୦୦୦ ଟଙ୍କାର ଋଣ ମଞ୍ଜୁର ପାଇଁ ଜିଲ୍ଲା ଗ୍ରାମ ଉନ୍ନୟନ ସଂସ୍ଥାର ଅର୍ଥ ଲଗାଣ ମଞ୍ଜୁର ପରେ ପୂର୍ଣ୍ଣବାସୀ କୋରାପୁଟ ପଞ୍ଚବଟୀ ଗ୍ରାମ୍ୟ ବ୍ୟାଙ୍କରୁ ୩୦୦୦ ଟଙ୍କାର ଆର୍ଥିକ ସହାୟତା ଦିଆଗଲା । ସେ ଟଙ୍କାରୁ ୧୦୦୦ ଟଙ୍କା ସବ୍‌ସିଡି ବା ରିହାତି ତାକୁ ମିଳିଲା । ସେ ଦେବଗନ୍ଧଣା ଗ୍ରାମର ମଧ୍ୟସ୍ଥଳୀରେ ଛୋଟିଆ କୁଡ଼ିଆଟିଏ ତିଆରି କରି ହୋଟେଲ ଆରମ୍ଭ କଲା । କ୍ରମଶଃ ତାର ଦୈନିକ ବିକ୍ରୀ ବୃଦ୍ଧି ପାଇଲା ଓ ପୁଅ ଝିଅ ମାନଙ୍କର ପାଠ ପଢ଼ାରେ ଅସୁବିଧା ହେଲା ନାହିଁ । ଦୈନିକ ଗୁଜୁରାଣ ମେଣ୍ଟିବା ପରେ କିଛି ଟଙ୍କା ଜମାଇଲା । ପୁଅଟି ପ୍ରତିଦିନ ନନ୍ଦପୁରକୁ ୭ କି. ମି. ଚାଲି ଚାଲି ଯାଇ ହୋଟେଲ ସଉଦା କିଣି ଆଣି ଦିଏ । ବର୍ତ୍ତମାନ ସେମାନଙ୍କର ଦୈନିକ ଆଦାୟ ହାରାହାରି ୫୦ ଟଙ୍କାରୁ କିଛି କମ୍ ନୁହେଁ । ସେ ମଧ୍ୟରୁ ଲାଭ ୧୫ ଟଙ୍କାରୁ ୨୦ ଟଙ୍କା ଯାଏଁ ହୁଏ । ଆଜି ପୂର୍ଣ୍ଣବାସୀର ବିଧବା ଜୀବନରେ ସୁଖ ଓ ଆନନ୍ଦର ବନ୍ୟା । ସେ ସାନ ପୁଅଟିର ପାଠ ପଢ଼ା ଚଳାଉଛି । ବର୍ତ୍ତମାନ ସେ ୭ମ ଶ୍ରେଣୀରେ ପଢ଼ୁଛି । ଦୁଇଟି ଝିଅ ପଞ୍ଚମ ଶ୍ରେଣୀ ଯାଏଁ ପଢ଼ିଲେ । ଏ ମଧ୍ୟରେ ୨୦୦୦ ଟଙ୍କା ଋଣକୁ ପରିଶୋଧ କରିବାକୁ ଆଶାୟୀ ଓ ଉତ୍ସାହୀ । ପ୍ରାୟ ୧୩୦୦ ଟଙ୍କାର ଋଣ ସୁଧ ସହ ସେ ପରିଶୋଧ କରି ଦେଲଣି । ଆଉ କେତୋଟି ଦିନ ପରେ ସମସ୍ତ ଟଙ୍କା ସୁଧ ସହ ଶୁଝିଦେଇ ଋଣ ମୁକ୍ତ ହେବ । ସେମାନେ ନିଜର ପରିଶ୍ରମ ବଳରେ ତଥା ଆଇ. ଆର. ଡି. ସହାୟତାରେ ପେଟପୁରା ଖାଇବାକୁ ସକ୍ଷମ ହୋଇଛନ୍ତି । ବନଫୁଲ ପରି ସମାଜରେ ଝଡ଼ି ମଉଳି ଧ୍ୱଂସ ପାଇ ଯାଉଥିବା ପରିବାରକୁ ନୂତନ ବିଂଶସୂତ୍ରୀର ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମ ପୂର୍ଣ୍ଣପ୍ରାଣରେ ସହାୟ ହୋଇ ପାରିଛି । ଏହାର ଜ୍ୱଳନ୍ତ ପ୍ରମାଣ ହେଲା ଶ୍ରୀମତୀ ପୂର୍ଣ୍ଣବାସୀ ଗୌଡ଼ର ବର୍ତ୍ତମାନର ସ୍ଥିତି ତଥା ଜୀବନ । ଜମି, ବାଡ଼ି, ଘର, ସୁନା କିଛି ନଥିଲେ ମଧ୍ୟ ତାକୁ ଆର୍ଥିକ ସହାୟତା ଦ୍ୱାରା ଧନ୍ଦା ମୂଳକ ଜୀବନଯାପନର ବାଟ ଦେଖାଇବାରେ ନୂତନ ବିଂଶସୂତ୍ରୀର ଅବଦାନ ଅବର୍ଣ୍ଣନୀୟ ।

## ତା ଜୀବନରେ ନୂଆ ଆଲୋକ

ଦିନ ମଜୁରିଆ ହରି ସେଠୀ । ଘର ଡେରାବିଶ୍ ବ୍ଲକ୍‌ର କୁସୁନ୍‌ପୁର ଗ୍ରାମରେ । ଆଜନ୍ମ ଦୁଃଖ ମଧ୍ୟରେ ଯୌବନ ଅବସ୍ଥା ଅତିକ୍ରମକରି ଆଜି ୪୨ ବର୍ଷରେ ପଦାର୍ପଣ କରିଛି । କୁଳ ବେଉସା ବ୍ୟତୀତ କାଠହଣା, କ୍ଷେତବାଡ଼ିରେ ମଜୁରୀ ଲଗି ବଡ଼ କଷ୍ଟରେ ପିଲପିଲିଙ୍କୁ ବଞ୍ଚାଇ ରଖିଛି । ମାତ୍ର, ପରିବାରର ଆବଶ୍ୟକତା ବୃଦ୍ଧିରେ ଜୀବନର ଚରମ ବିପର୍ଯ୍ୟସ୍ତ ବେଳାରେ ଭଗବାନ ତାର ସହାୟ ହୋଇଛନ୍ତି । ହରି ସେଠୀର ନାଁ ଗ୍ରାମର ୧୦ ଗୋଟି ଦରିଦ୍ରତମ ପରିବାର ତାଲିକାରେ ସ୍ଥାନ ପାଇଛି । ପଞ୍ଚୁପାଣ୍ଡବ ଗ୍ରାମ୍ୟ ବ୍ୟାଙ୍କ ତରଫରୁ ହରିକୁ ୫ ହଜାର ଟଂକା ମୂଲ୍ୟର ଗୋଟିଏ ଶଗଡ଼ ଓ ହଳେ ବଳଦ ମିଳିଛି ।

ଆଜି ହରି ସେଠୀ ଜୀବନ କଟାଇବାରେ ନୂତନ ଆଲୋକପାଇ ପାରିଛି । ଦୈନିକ ୨୦ଟଙ୍କାରୁ ୩୦ ଟଂକା ରୋଜଗାର କରି ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣକରି ପାରୁଛି । ସହାୟକ ପଞ୍ଚୁପାଣ୍ଡବ ଗ୍ରାମ୍ୟ ବ୍ୟାଙ୍କ, ଡେରାବିସ୍ ଗୋଷ୍ଠୀ ଉନ୍ନୟନ ଅଧିକାରୀ ତଥା ଗ୍ରାମାଞ୍ଚଳ ଦରିଦ୍ରତମ ପରିବାରର ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମ ଯୋଜନା ମାଧ୍ୟମରେ ହରି ସେଠୀର ବିଗତ ଜୀବନର ସମସ୍ତ ଦୁଃଖ ଦୂରିଭୂତ ହୋଇପାରିଛି ବୋଲି ସେ କହେ ଓ ଶଗଡ଼ ଉପରେ ଜାନମ ତାଣିଆ ସ୍ୱର ତୋଳେ-ଥିବା ମନ ଖୁଲ ଯିବା ଚକା ନୟନ ଦେଖିବା ।

# ଦୁଃଖମୟ ଦିନଗୁଡିକ ଘୁଞ୍ଚିଯାଇଛି

କୋରାପୁଟ ଜିଲାର ଓଡ଼ିଶା, ଆନ୍ଧ୍ର, ସୀମାନ୍ତ ବଣ୍ଡୁଗାଁ ବ୍ଲକର ନୀଳାବାଡି ଗ୍ରାମରେ ୧୯୫୩ ମସିହାରେ ଟେକାଟୀ କାନେୟାର ଜନ୍ମ କିନ୍ତୁ । ଦାରିଦ୍ର୍ୟର କଷାଘାତରେ ତାର ବାଲ୍ୟବସ୍ଥା କଟିଛି । ୮୦୦ ଲୋକ ବିଶିଷ୍ଟ ଏହି ଗ୍ରାମରେ ତା'ର ବାପା ଟେକାଟୀ ଗୁମ୍ପାସ୍ୱାମୀ, ୬୬ ବର୍ଷ ବୟସ ବୃଦ୍ଧ ମନ୍ଦିର ପୂଜାରେ ଯାହା ରୋଜଗାର କରନ୍ତି, ପରିବାର ପୋଷଣ କରିବାକୁ ଅସମର୍ଥ ହୋଇ ପଡୁଥିଲେ । ତଥାପି କାନେୟାକୁ ଷଷ୍ଠଶ୍ରେଣୀ ଯାଏ ପାଠ ପଢ଼ାଇଲେ । ତା'ପରେ କାନେୟା ନୀଳାବାଡିରୁ ପ୍ରତିଦିନ ଚାଲିଆସି ବଣ୍ଡୁଗାଁ ଠାରେ ପୋଷାକ ସିଲେଇ କାମ ଶିଖିଲା । କିନ୍ତୁ ସମ୍ବଳ ଅଭାବରୁ ସେ ନିଜ ଗୋଡ଼ରେ ଠିଆ ହୋଇ ପାରୁ ନ ଥିଲା । ସିଲେଇ ମିସିନ୍ କିଣିବାର ଆଶା ତାର ଦିବା ସ୍ୱପ୍ନରେ ପରିଣତ ହେବାକୁ ଯାଉଥିଲା । କିନ୍ତୁ ନୂତନ ବିଂଶସୂତ୍ରୀ କାର୍ଯ୍ୟକ୍ରମର ପଦାର୍ପଣ ଏ ଦେଶରେ ହେବା ସଙ୍ଗେ ସଙ୍ଗେ ଓଡ଼ିଶା ସରକାରଙ୍କର ଇ. ଆର୍. ଆର୍. ପି. ଅର୍ଥାତ ଗ୍ରାମାଞ୍ଚଳ ଦରିଦ୍ରତମ ପରିବାରଙ୍କ ଅର୍ଥନୈତିକ ଅଭ୍ୟୁତ୍ଥାନ କାର୍ଯ୍ୟକ୍ରମର ପ୍ରସାର ଓଡ଼ିଶାର ପ୍ରତିପଲ୍ଲୀରେ ହେବାକୁ ଲାଗିଲା । ୧୯୮୨, ମାର୍ଚ୍ଚ ମାସ ୧୦ ତାରିଖ ଦିନ ଗ୍ରାମସଭା ଗ୍ରାମର ୧୦ ଜଣ ଗରିବ ପରିବାରଙ୍କ ନାମକୁ ମନୋନୀତ କଲା । ତା ମଧ୍ୟରେ କାନେୟାର ନାମ ବି. ଡି. ଓ., ବଣ୍ଡୁଗାଁ ନିକଟକୁ ଗଲା । ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା, କୋରାପୁଟର ଅର୍ଥ ଲଗାଣରେ ଦରଜୀ ପ୍ରକଳ୍ପ ଦ୍ୱାରା କାନେୟାକୁ ୧୯-୫-୧୯୮୨ ମସିହାରେ ବଣ୍ଡୁଗାଁ ପଞ୍ଚବଟୀ ଗ୍ରାମ୍ୟବ୍ୟାଙ୍କ୍ ୨୦୦୦ ଟଙ୍କାର ଅନୁଦାନ ମଞ୍ଜୁର କରି ଉଷା ସିଲେଇ କଳ, ଓ କଇଁଚୀ କିଣାଇ ଦେଲେ । ୩୫୦ ଟଙ୍କା ଦେଇ କନା କାଟିବାପଟା ଓ ଘରର ବନ୍ଦୋବସ୍ତ କରାଇ ଦିଆଗଲା । ଏହିପରି ନିଜଘର ବାରଣ୍ଡାରେ ସିଲେଇକାମ କରିଲା ଓ କ୍ରମଶଃ ବହୁତ ସଲେଇକାମ ଆସିଲା ।

ଇ. ଆର୍. ଆର୍. ପି. ଦ୍ୱାରା କାନେୟା ୨୦୦୦ ଟଙ୍କା ମଧ୍ୟରୁ ମାତ୍ର ୫୦୦ ଟଙ୍କା ସୁଧସହ ବ୍ୟାଙ୍କକୁ ଶୁଝିବାକୁ ପଡିଲା । ବର୍ତ୍ତମାନ ତା'ର ଜୀବନରେ ବୈପ୍ଳବିକ ପରିବର୍ତ୍ତନ ଆସିଛି । ତା'ର ଦୈନିକ ଆଦାୟ ବର୍ତ୍ତମାନ ୨୦ ଟଙ୍କାରୁ ଅଧିକ ହେଉଛି । ଏହି ଅର୍ଥରେ ସେ ସାଇକେଲ, ରେଡ଼ିଓ କିଣିଛି ଓ ନଜେ ଦାମିକା ପୋଷାକ ପିନ୍ଧି ହାତରେ ଘଡିବାନ୍ଧି ମନ ପ୍ରଫୁଲ୍ଲରେ ସାଂସାରିକ ଜୀବନ ଅତିବାହିତ କରୁଛି । ତା'ର ବର୍ତ୍ତମାନ ୨ପୁଅ, ଓ ଗୋଟିଏ ଝିଅ । ବଡ଼ପୁଅ ତୃତୀୟ ଶ୍ରେଣୀରେ, ସାନପୁଅ ବାଲବାଡିରେ ଓ ଝିଅଟି ପ୍ରଥମ ଶ୍ରେଣୀରେ ପଢୁଛନ୍ତି । ପରିବାର ନିୟୋଜନ କାର୍ଯ୍ୟକ୍ରମ ଦ୍ୱାରା ଅସ୍ତ୍ରୋପଚାର ହୋଇ ଛୋଟ ପରିବାର ସୁଖୀ ପରିବାର ଭାବେ କାନେୟାର ଜୀବନ ବିତୁଛି । ମାଳି କାଟି ହେଲେ ମଧ୍ୟ ପୁଅ, ଝିଅ ତିନିକୁ ଉଚ୍ଚ ଶିକ୍ଷିତ କରିବାକୁ ସେ ମନରେ ଆଶା କରିଛି । ନିଜର ଛପର ଘରର ରୂପ ବଦଳାଇବାକୁ ସକ୍ଷମ ହୋଇଛି ଓ ବିଦ୍ୟୁତ୍‌କରଣ କରି ପାରିଛି । ସ୍ୱାବଲମ୍ବନଶୀଳ ହେବାର ଦକ୍ଷତା ଇ. ଆର୍. ଆର୍. ପି. କାର୍ଯ୍ୟକ୍ରମ ଆଣି ଦେଇଛି । ଯଦ୍ୱାରା ଉପରୋକ୍ତ ପ୍ରଗତି ବ୍ୟତିତ ଏକ ନୂତନ ଘର ଗାଁ ମଝିରେ କିଣିଛି ଓ ସ୍ୱଳ୍ପ ସଞ୍ଚୟ ଯୋଜନାରେ ଏକ ସଞ୍ଚୟ ଖାତା ବ୍ୟାଙ୍କ୍‌ରେ ଖୋଲି କିଛି କିଛି ଟଙ୍କା ସଞ୍ଚୟ ରଖୁଛି । ଏ ବୃଦ୍ଧ ଅବସ୍ଥାରେ ବାପାଙ୍କର ଦୁଃଖ ଦୂର କରି ନିଜର ପୁଅ, ଝିଅ, ସ୍ତ୍ରୀ ସହ ଆଜି କାନେୟା ସୁଖରେ ଦିନ ବିତାଉଛି । ତା'ର ଦୁଃଖମୟ ଦିନଗୁଡିକୁ ଇ. ଆର୍. ଆର୍.ପି. ଯୋଜନାର ସ୍ରୋତ ଉସାଇ ନେଉଛି।

○ ○ ○



# ପ୍ରଗତି ପ୍ରସଙ୍ଗ

## ସମନ୍ୱୟ ଗ୍ରାମ୍ୟ ଉନ୍ନୟନ ଯୋଜନା ମାଧ୍ୟମରେ ବାଲେଶ୍ୱର ଜିଲ୍ଲାରେ ଲୁଣି ପାଣିରେ ଚିଙ୍ଗୁଡ଼ି ଚାଷ

ବାଲେଶ୍ୱର ଜିଲ୍ଲାର ସଦର ବ୍ଲକର ବଙ୍ଗୋପସାଗର କୂଳରେ ଜୟଦେବ କଶବା ଏକ ଛୋଟ ଗାଁ । ଏହାର ସମୁଦ୍ର କୂଳକୁ ଲାଗି ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ପତିତ ପଡ଼ିଥିଲା । ଘାସ ଖିଏ ମଧ୍ୟ କଅଁଳୁ ନ ଥିଲା । କତିପୟ ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ ଗରିବ ଲୋକଙ୍କ ଥଇଥାନ ନିମନ୍ତେ ସରକାରଙ୍କ ତରଫରୁ ପ୍ରତ୍ୟେକଙ୍କୁ ଏ୦˙୫୦ ଡ଼ି: ହିସାବରେ ପଟ୍ଟା ସୂତ୍ରେ ୧୯୭୫ରେ ମଞ୍ଜୁର କରାଯାଇ ଥିଲା । ଦୀର୍ଘ ୭।୮ ବର୍ଷ ଧରି ସେହି ଜମିଗୁଡ଼ିକ ସେମାନେ କୌଣସି ଚାଷ କାର୍ଯ୍ୟରେ ବିନିଯୋଗ କରି ପାରୁ ନ ଥିଲେ ।

୧୯୮୨ ମସିହା ଏପ୍ରିଲ ମାସରେ ସ୍ଥାନୀୟ ବିଧାନ ସଭା ସଦସ୍ୟଙ୍କ ସହଯୋଗିତାରେ ଉକ୍ତ ପତିତ ଜମିକୁ ଲାଭପ୍ରଦ କାର୍ଯ୍ୟରେ ବିନିଯୋଗ କରିବାର ଏକ ପରିକଳ୍ପନା ହେଲା । ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ପ୍ରୋଜେକ୍ଟ ଅଫିସର, ବିଧାନ ସଭା ସଦସ୍ୟ, ସଦର ବ୍ଲକର ଗୋଷ୍ଠୀ ଉନ୍ନୟନ ଅଧିକାରୀ ଓ ମତ୍ସ୍ୟ ବିଭାଗର କେତେକ କର୍ମକର୍ତ୍ତା ଜୟଦେବ କଶବା ଗ୍ରାମ ପରିଦର୍ଶନରେ ଗଲେ ଓ ସେଠାକାର ବାସିନ୍ଦାମାନଙ୍କ ସହ ପାରସ୍ପରିକ ଆଲୋଚନା କଲେ ।

ଏହି ଜମିରେ ଜଳ ମାହାରା ମାଧ୍ୟମରେ ସମୁଦ୍ରରୁ ଲୁଣି ପାଣି ସଂଗ୍ରହ କରି କେତେକ ପୁଷ୍କରିଣୀ ସୃଷ୍ଟି କରି ତହିଁରେ ଚିଙ୍ଗୁଡ଼ି ଚାଷ କରି ଜୀବିକା ନିର୍ବାହ କରିବା ପାଇଁ ଲୋକମାନଙ୍କୁ ବୁଝାଇ ଦିଆଗଲା । ଲୋକମାନେ ରାଜି ହେଲେ ଓ ଉପସ୍ଥିତ ଗ୍ରାମବାସୀଙ୍କ ମଧ୍ୟରୁ ୭୨ ଜଣଙ୍କୁ ଚିହ୍ନଟ କରାଯାଇ ଥିଲା । ଏମାନଙ୍କ ମଧ୍ୟରେ ଆଦିବାସୀ ୩୦ ଜଣ, ହରିଜନ ୩୧ ଜଣ ଓ ଅନ୍ୟ ଜାତି ୧୧ ଜଣ । ପ୍ରତ୍ୟେକ ପରିବାରର ବାର୍ଷିକ ଆୟ ଟ ୩,୫୦୦ଙ୍କାରୁ ନ୍ୟୁନ ଥିବା ଦୃଷ୍ଟେ ଏମାନେ ଆଇ: ଆର: ଡ଼ି: ଯୋଜନା ଅନୁଯାୟୀ ସରକାରୀ ସାହାଯ୍ୟରେ କର୍ମ ଯୋଗାଣ ପାଇବା ପାଇଁ ହକ୍‌ଦାର ବୋଲି ବିବେଚିତ ହେଲେ । ଉକ୍ତ ଗ୍ରାମଟି ବାଲେଶ୍ୱର ଶାଖା ଷ୍ଟେଟ ବ୍ୟାଙ୍କ ଓ ସିଣ୍ଡିକେଟ ବ୍ୟାଙ୍କ ପରିସରଭୁକ୍ତ ଥିବା ହେତୁ ସଂପୃକ୍ତ ବ୍ୟାଙ୍କ ମଧ୍ୟ ୭୨ ଜଣଙ୍କୁ ଋଣ ମଞ୍ଜୁର କରିବା ପାଇଁ ଆଗେଇ ଆସିଲେ । ପ୍ରତ୍ୟେକ ଲୋକଙ୍କୁ ଏ୦˙୫୦ ଡ଼ି. ଜମିରେ ପୁଷ୍କରିଣୀ ଖନନ ପାଇଁ ଟ ୪,୦୭୦ଙ୍କା ଋଣ ମଞ୍ଜୁର କରାଗଲା । ଗ୍ରାମ୍ୟ ଉନ୍ନୟନ ସଂସ୍ଥା ମଧ୍ୟ ରିହାତି ପାଣ୍ଠି ଯୋଗାଇ ଦେଲେ । ୭୨ ଗୋଟି ପୋଖରୀ ଖୋଳାଗଲା ।

ଲୋକମାନେ ପୋଖରୀ ଖୋଳିଲେ । ମତ୍ସ୍ୟ ବିଭାଗ ତରଫରୁ ଚିଙ୍ଗୁଡ଼ି ଯାଆଁଳ ଓ ଚିଙ୍ଗୁଡ଼ି ପାଇଁ ପୋଖରୀରେ ଆବଶ୍ୟକୀୟ ଖାଦ୍ୟ ବ୍ୟବସ୍ଥା ଓ ବୈଷୟିକ ପରାମର୍ଶ ଦିଆଗଲା । ଗତ ୧୯୮୩ ମସିହା ଜୁଲାଇ ମାସଠାରୁ ଜୟଦେବ କଶବା ଗ୍ରାମରେ ପୂର୍ଣ୍ଣାଙ୍ଗ ଚିଙ୍ଗୁଡ଼ି ଚାଷ ଯୋଜନା କାର୍ଯ୍ୟକାରୀ ହେଲା । ଚାଷର ଉନ୍ନତି ନିମନ୍ତେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ତରଫରୁ ବର୍ଷା ଋତୁରେ ସମୁଦ୍ର ଜଳ ପ୍ଲାବନ ଦାଉରୁ ରକ୍ଷା ପାଇବା ନିମନ୍ତେ ଏକ ବନ୍ଧ ନିର୍ମାଣ କରିବା ସଂଗେ ସଂଗେ ପୋଖରୀ ହୁଡ଼ାରେ ନଡ଼ିଆ ଗଛ ଲଗାଯାଇ ଅଧିକ ଆର୍ଥିକ ଆୟର ବ୍ୟବସ୍ଥା କରାଗଲା ।

ଏ ଜିଲ୍ଲାରେ ଚିଙ୍ଗୁଡ଼ି ଚାଷ ଯୋଜନା ଆରମ୍ଭରେ ଲୋକମାନେ ଏକର ପିଛା ୬୦ କେଜିରୁ ୭୦ କେଜି ଚିଙ୍ଗୁଡ଼ି ଆମଦାନୀ କରି ଲାଭବାନ ହୋଇଛନ୍ତି ଓ ଲବ୍‌ଧ ଆୟରୁ ବ୍ୟାଙ୍କ ଋଣର କେତେକ କିସ୍ତି ପରିଶୋଧ କଲେଣି ।

ଏହି ଚିଙ୍ଗୁଡ଼ି ଚାଷରେ ଉପକୃତ ହୋଇଥିବା ବ୍ୟକ୍ତିମାନେ ଏକ ସମିତି ଗଠନ କରି ପାରିଛନ୍ତି । ତାର ନାମ "ଜୟଦେବ କଶବା ପ୍ରାଥମିକ ଚିଙ୍ଗୁଡ଼ି ଚାଷ ସମବାୟ ସମିତ" । ସମିତି ପାର୍ଶ୍ୱବର୍ତ୍ତୀ ଲୁଣା ନଦୀ ଓ ନାଳଗୁଡ଼ିକୁ ବନ୍ଦୋବସ୍ତିଆ ପଟ୍ଟା ନେଇ ସେଥିରେ ଚିଙ୍ଗୁଡ଼ି ଯାଆଁଳ ସଂଗ୍ରହ କରି ପାରୁଛନ୍ତି ।

ଏହି ଚିଙ୍ଗୁଡ଼ି ଚାଷ ଯୋଜନା ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳର ଲୋକମାନଙ୍କ ମନରେ ଏକ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିଅଛି । ବହୁ ଲୋକ ଉକ୍ତ ଚାଷ ପାଇଁ ଆଗଭର ହୋଇ ଆସୁଛନ୍ତି ।

---

## ନୂତନ ସେତୁ ପ୍ରକଳ୍ପ

କେନ୍ଦ୍ରାପଡ଼ା ସବ୍‌ଡିଭିଜନର ପଟ୍ଟାମୁଣ୍ଡାଇ-ରାମନଗର ରାସ୍ତାରେ ଗୋବରୀ ନଦୀର ଗଭୀର ଯୋର ଉପରେ ଏବଂ ପଟାମୁଣ୍ଡାଇ-ରାଜନଗର ରାସ୍ତାରେ ସୁଗଭୀର ହଂସୁଆ ନଦୀ ଉପରେ ଦୁଇଟି ସେତୁ ନିର୍ମାଣ କରିବାକୁ ସରକାର ନିଷ୍ପତ୍ତି କରିଛନ୍ତି । ପ୍ରାୟ ୫୦ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଗୋବରୀ ଯୋର ସେତୁର ନିର୍ମାଣ କାର୍ଯ୍ୟ ଯଥାଶୀଘ୍ର ଆରମ୍ଭ କରାଯାଇ ଏକ ବର୍ଷ ମଧ୍ୟରେ ସଂପୂର୍ଣ୍ଣ କରାଯିବ । ଏତଦ୍ୱାରା ମହାକାଳପଡ଼ା ପଞ୍ଚାୟତ ସମିତିର ରାମନଗର, ଖରିନାସୀ, ବଟୀଘର, ବରକନ୍ଧା ଓ ବାରଡାଙ୍ଗ ସମେତ ସାତଟି ଗ୍ରାମ ପଞ୍ଚାୟତର ଜନସାଧାରଣ ବର୍ଷସାରା ଗମନାଗମନର ସୁବିଧା ପାଇପାରିବେ ।

ସେହିପରି ହଂସୁଆ ସେତୁର ନିର୍ମାଣ ବାବଦରେ ପ୍ରାୟ ୨ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି ଏବଂ ଏହାକୁ ୨ ବର୍ଷରେ ସଂପୂର୍ଣ୍ଣ କରିବା ଲାଗି ଲକ୍ଷ୍ୟ ଧାର୍ଯ୍ୟ ହୋଇଛି । ଦୀର୍ଘଦିନରୁ ଦାବୀ ହୋଇଆସୁଥିବା ଏହି ହଂସୁଆ ସେତୁ ନିର୍ମିତ ହେଲେ ରାଜନଗର ପଞ୍ଚାୟତ ସମିତିର ଗୁପ୍ତି, ରାଜନଗର, ଖିଦିବାର, ଖମୁକ, ସାତଭାୟା, ତାଙ୍ଗମାଳ ସମେତ ୧୨ଟି ଗ୍ରାମପଞ୍ଚାୟତର ଲକ୍ଷାଧିକ ଜନସାଧାରଣ ଉପକୃତ ହୋଇପାରିବେ ।

---

## ବେଳାଭୂମିରେ ଆଧୁନିକ ଧର୍ମଶାଳା ନିର୍ମାଣ

ଜାନୁଆରୀ ୧୨ତାରିଖ ପୂର୍ବାହ୍ନରେ ପୁରୀର ବିଶ୍ୱବିଖ୍ୟାତ ଶ୍ରୀ ଜଗନ୍ନାଥ ମନ୍ଦିର ନିକଟରେ ତଥା ସମୁଦ୍ର ତଟବର୍ତ୍ତୀ ଏକ ଜେଣ୍ଟ୍ରଜାଗାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ 'ଯାତ୍ରୀକା' ନାମକ ଏକ ଆଧୁନିକ ଧର୍ମଶାଳା ନିର୍ମାଣ ପାଇଁ ଭିତ୍ତି ପ୍ରସ୍ତର ସ୍ଥାପନ କରିଛନ୍ତି । କେନ୍ଦ୍ର ପର୍ଯ୍ୟଟନ ମନ୍ତ୍ରଣାଳୟ ଆନୁକୂଲ୍ୟରେ ଗଠିତ ଭାରତୀୟ ଯାତ୍ରୀ ଆବାସ ବିକାଶ ସମିତିର ଉଦ୍ୟମରେ ୧୨ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଯାଉଥିବା ଏହି ପ୍ରକାଣ୍ଡ ଧର୍ମଶାଳାରେ ପ୍ରାୟ ୧୦୦ଜଣ ପର୍ଯ୍ୟଟକ ଓ ଯାତ୍ରୀ ଅଳ୍ପ ଖର୍ଚ୍ଚରେ ରହିପାରିବେ । ଏଥିପାଇଁ ରାଜ୍ୟ ସରକାର ଏହି ସମିତିକୁ ବିନା ମୂଲ୍ୟରେ ଆବଶ୍ୟକ ପରିମାଣ ଜମି ଯୋଗାଇ ଦେଇଛନ୍ତି ।

ଏହି ଉପଲକ୍ଷେ ଅନୁଷ୍ଠିତ ଏକ ବିରାଟ ଜନ ସମାବେଶରେ ମୁଖ୍ୟମନ୍ତ୍ରୀ ପୁରୀ ପରି ପ୍ରଖ୍ୟାତ ପର୍ଯ୍ୟଟନ କେନ୍ଦ୍ର ଓ ପବିତ୍ର ତୀର୍ଥସ୍ଥାନରେ ଏପରି ଆଧୁନିକ ଧରଣର ଧର୍ମଶାଳା ତଥା ଯାତ୍ରୀ ନିବାସ ନିର୍ମାଣ କରିବା ଯଥାର୍ଥ ବୋଲି ମତବ୍ୟକ୍ତ କରି ଏହି ସମିତିର ଉଦ୍ୟମକୁ ଭୂୟସୀ ପ୍ରଶଂସା କରିଥିଲେ । ଏହିପରି ନିବାସ କେବଳ ମଧ୍ୟମ ଓ ନିମ୍ନ ଆୟକାରୀ ପର୍ଯ୍ୟଟକ ଓ ତୀର୍ଥଯାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥିବା ଦୃଷ୍ଟିରୁ ଓଡ଼ିଶାର ଅନ୍ୟ ୬ଟି ସ୍ଥାନରେ ଏପରି ଧର୍ମଶାଳା ନିର୍ମିତ ହେବ ବୋଲି ସେ ଘୋଷଣା କରିଥିଲେ । ସେ କହିଲେ ଯେ ଚଳିତ ବର୍ଷ ମଧ୍ୟରେ ଭୁବନେଶ୍ୱରରେ ଗୋଟିଏ ଏବଂ ଆସନ୍ତା ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ କୋଣାର୍କ, ଚନ୍ଦିପାସ, ଯାଜପୁର, ନୃସିଂହନାଥ ଓ ଖିଚିଙ୍ଗଠାରେ ଗୋଟିଏ ଲେଖାଏଁ ଧର୍ମଶାଳା ନିର୍ମାଣ କରିବାକୁ ସମିତି ସମ୍ମତ ହୋଇଛନ୍ତି । ଏହି ଆଧୁନିକ ଧର୍ମଶାଳା ନିର୍ମାଣ କାର୍ଯ୍ୟ ଆସନ୍ତା ରଥଯାତ୍ରା ପୂର୍ବରୁ ସମ୍ପୂର୍ଣ୍ଣ ହେବ ବୋଲି ଆଶା ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ପୁରୀ ପରି ପର୍ଯ୍ୟଟନଭିତ୍ତିକ ସହରର ଉନ୍ନତି ପର୍ଯ୍ୟଟନ ଓ ହୋଟେଲ ଶିଳ୍ପର ବିକାଶ ଉପରେ ନିର୍ଭର କରେ । ଏଠାରେ ଅଧିକ ସଂଖ୍ୟକ ହୋଟେଲ ଓ ଏହି ଧର୍ମଶାଳା ନିର୍ମିତ ହେଉଥିବା ଫଳରେ ଏବଂ ସର୍ବୋପରି ହୋଟେଲକୁ ଏକ ଶିଳ୍ପ ରୂପେ ଘୋଷଣା କରାଯାଇଥିବା ଦୃଷ୍ଟିରୁ ଓଡ଼ିଶାକୁ ବିଶେଷତଃ ପୁରୀକୁ ଅଧିକ ସଂଖ୍ୟକ ପର୍ଯ୍ୟଟକ ଓ ତୀର୍ଥଯାତ୍ରୀ ଆସୁଛନ୍ତି ବୋଲି ଦର୍ଶାଇ ସେମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବ ବୋଲି ସେ ଦୃଢ଼ ଆଶା ପ୍ରକାଶ କରିଥିଲେ । ପୁରୀ ସହରକୁ ଅଧିକ ଆକର୍ଷଣୀୟ କରିବା ଲାଗି ମୁଖ୍ୟମନ୍ତ୍ରୀ ସହରର ପାରିପାର୍ଶ୍ୱିକ ଉନ୍ନତି, ନାଳ ନର୍ଦ୍ଦମା ନିର୍ମାଣ ଏବଂ ବେଳାଭୂମିର ପରିଷ୍କାର ପରିଚ୍ଛନ୍ନତା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ।

## କଟକ ଜିଲ୍ଲାରେ କ୍ଷୁଦ୍ର ଓ କୁଟୀର ଶିଳ୍ପ

କଟକ ଜିଲ୍ଲାରେ ଚଳିତ ଆର୍ଥିକ ବର୍ଷର ଗତ ଅକ୍ଟୋବର ମାସ ସୁଦ୍ଧା ୩୮୪ଟି କ୍ଷୁଦ୍ର ଶିଳ୍ପ ଏବଂ ୫,୫୩୩ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯାଇ ସେଥିରେ ୧୦,୮୩୪ ଜଣ ବ୍ୟକ୍ତିଙ୍କୁ ନିଯୁକ୍ତି ସୁବିଧା ଯୋଗାଇ ଦିଆଯାଇଛି । କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ପାଇଁ ୩ କୋଟି ୩୬ ଲକ୍ଷ ୫୩ ହଜାର ଟଙ୍କା ଏବଂ କୁଟୀର ଶିଳ୍ପ ପ୍ରତିଷ୍ଠା ପାଇଁ ୧ କୋଟି ୯ ଲକ୍ଷ ୨୩ ହଜାର ଟଙ୍କା ବିନିଯୋଗ କରାଯାଇଛି । ଚଳିତ ଆର୍ଥିକ ବର୍ଷ ମଧ୍ୟରେ ରାଜ୍ୟର ବିଭିନ୍ନ ଜିଲ୍ଲା ଶିଳ୍ପ କେନ୍ଦ୍ର ମାଧ୍ୟମରେ ୩ ହଜାର କ୍ଷୁଦ୍ର ଶିଳ୍ପ ଏବଂ ୬୦ ହଜାର କୁଟୀର ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

---

## ବ୍ରହ୍ମପୁର ସଘନ ଗୋ-ଉନ୍ନୟନ ଯୋଜନା

ବ୍ରହ୍ମପୁର ସଘନ ଗୋ-ଉନ୍ନୟନ ଯୋଜନା ଅନ୍ତର୍ଗତ ଗୋ-ଉନ୍ନୟନ ଅଧିକାରୀ ଜଣାଇଛନ୍ତି ଯେ ଗତ ନଭେମ୍ବର ମାସରେ ଉକ୍ତ ଅଞ୍ଚଳରେ ୬୬୯ଟି ଗାଈଙ୍କର କୃତ୍ରିମ ପ୍ରଜନନ କରାଯାଇଥିଲା । ସେହି ମାସରେ ୯୬ଟି ଉନ୍ନତ ଅଣ୍ଡିରା ବାଛୁରୀ ଓ ୧୧୦ ଗୋଟି ଉନ୍ନତ ମାଈ ବାଛୁରୀ ଜନ୍ମିଥିଲେ । ଏହି ସମୟ ମଧ୍ୟରେ ୧,୨୬୩ ଗୋଟି ଅଣ୍ଡିରା ବାଛୁରୀଙ୍କୁ ଧାଡ଼ି କରାଯିବା ସଙ୍ଗେ ସଙ୍ଗେ ୭,୨୬୫ ଗୋଟି ପଶୁପକ୍ଷୀଙ୍କୁ ରୋଗ ପ୍ରତିଷେଧକ ଟିକା ଦିଆଯାଇଥିଲା, ୯,୫୦୧ ଗୋଟି ପଶୁପକ୍ଷୀଙ୍କ ବିଭିନ୍ନ ସାଧାରଣ ରୋଗର ଚିକିତ୍ସା କରାଯାଇଥିଲା ଓ ୧୪ ଗୋଟି ବୁଲା ଷଣ୍ଢଙ୍କୁ ଅପସାରଣ କରାଯାଇଥିଲା ।

## ଶିଶୁ କଲ୍ୟାଣ ପାଣ୍ଠି

ଶିଶୁ କଲ୍ୟାଣ ପାଣ୍ଠିକୁ ଅକୁଣ୍ଠ ଚିତ୍ତରେ ଦାନ କରିବାପାଇଁ ରାଜ୍ୟ ଶିଶୁ କଲ୍ୟାଣ ପାଣ୍ଠି ପରିଚାଳନା ବୋର୍ଡର ଚେୟାରମ୍ୟାନ ତଥା ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭଜମନ ବେହେରା ଗ୍ରାମ ପଞ୍ଚାୟତ ସରପଞ୍ଚମାନଙ୍କୁ ନିବେଦନ କରିଛନ୍ତି ।

ଶ୍ରୀବେହେରା କହିଛନ୍ତି ଶିଶୁ ହିଁ ଜାତିର ସଂପଦ ଓ ଦେଶର ଭବିଷ୍ୟତ । ଦେଶର ଉନ୍ନତି ପାଇଁ ଶିଶୁମାନଙ୍କୁ ସୁନାଗରିକ କରି ଗଢ଼ିବା ଏକାନ୍ତ ଆବଶ୍ୟକ । ଶିଶୁମାନଙ୍କର ଶାରୀରିକ ଓ ମାନସିକ ବିକାଶ ବିନା ସେମାନଙ୍କୁ ସୁନାଗରିକ କରି ଗଢ଼ିବା ସମ୍ଭବ ହେବନାହିଁ ।

"ଆମ ରାଜ୍ୟର ଶିଶୁମାନଙ୍କର ଅନେକ ସମସ୍ୟା ରହିଛି ତନ୍ମଧ୍ୟରୁ ବିକଳାଙ୍ଗ, ପିତୃମାତୃହୀନ, ଯତ୍ନର ଅଭାବ ଓ ଗରିବ ଅସହାୟ ପିଲାମାନଙ୍କର ଥଇଥାନ ଇତ୍ୟାଦି ପ୍ରଧାନ ।

"ଏହିସବୁ ପିଲାଙ୍କର ସେବା କରିବା ପାଇଁ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗୁଡ଼ିକରେ ସରକାରଙ୍କ ସହ ସହଯୋଗ କରୁଛନ୍ତି । ଆବଶ୍ୟକ ତୁଳନାରେ ତାହା ଯଥେଷ୍ଟ ନୁହେଁ । ଆମ ରାଜ୍ୟରେ ଶିଶୁ ବିକାଶ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରିବାପାଇଁ କେନ୍ଦ୍ର ସରକାରଙ୍କ ସାହାଯ୍ୟରେ 'ଶିଶୁ କଲ୍ୟାଣ ପାଣ୍ଠି' ପରିଚାଳନା ଦାୟିତ୍ୱ ଉକ୍ତ...

ସରକାରୀ ଓ ବେସରକାରୀ ସଭ୍ୟଙ୍କଦ୍ୱାରା ଗଠିତ ପରିଚାଳନା ବୋର୍ଡ ଉପରେ ନ୍ୟସ୍ତ କରାଯାଇଛି । ସମସ୍ତ ଶିଶୁ ଉନ୍ନୟନ କାର୍ଯ୍ୟକ୍ରମ ଏହି ବୋର୍ଡର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କରାଯାଉଛି । ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ମୁଁ ରାଜ୍ୟର ପ୍ରତ୍ୟେକ ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ଓ ଗ୍ରାମପଞ୍ଚାୟତର ସରପଞ୍ଚମାନଙ୍କୁ ଅନ୍ୟୁନ ଏକଶତ ଟଙ୍କା କିମ୍ବା ତଦୂର୍ଦ୍ଧ୍ୱ ଶିଶୁ କଲ୍ୟାଣ ପାଣ୍ଠିକୁ ସାହାଯ୍ୟ ପ୍ରଦାନ କରିବା ନିମନ୍ତେ ନିବେଦନ କରୁଅଛି ।

ଉକ୍ତ ଅର୍ଥ ସେକ୍ରେଟେରୀ-ଟ୍ରେଜରର, ରାଜ୍ୟ ଶିଶୁ କଲ୍ୟାଣ ପାଣ୍ଠି, ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ, ଓଡ଼ିଶା, ଭୁବନେଶ୍ୱରଙ୍କ ଠିକଣାରେ ପଠାଇବାକୁ ଅନୁରୋଧ ।"

———

## ଓଡ଼ିଶା ଉପକୂଳକୁ ସମୁଦ୍ର କଇଁଛଙ୍କ ଆଗମନ

ଜାନୁଆରୀ ମାସ ୧୪ ତାରିଖରୁ ବହୁ ସଂଖ୍ୟକ ସମୁଦ୍ର କଇଁଛ କଟକ ଜିଲ୍ଲା ଅନ୍ତର୍ଗତ ଭିତର କନିକା ଉପକୂଳର ଅଭୟାରଣ୍ୟରେ ବାସ ସ୍ଥାପନ କରିବା ପାଇଁ ଆସିଛନ୍ତି । ଉକ୍ତ କୂଳ ଉପକୂଳରେ ଏମାନଙ୍କର ଗତି ବିଧି ଲକ୍ଷ୍ୟ କରିବା ପାଇଁ ନିଯୁକ୍ତ ଥିବା ଜଂଗଲ କର୍ମଚାରୀମାନେ ପ୍ରାୟ ୮୦ ହଜାର କଇଁଛ ୧୮ ତାରିଖ ରାତ୍ରିରେ ଭିତର କନିକା ଅଭୟାରଣ୍ୟକୁ ଆସିଥିବା ଦେଖିଥିଲେ । କ୍ରମେ ସେମାନଙ୍କ ସଂଖ୍ୟା ହ୍ରାସ ପାଉଛି । ପ୍ରତି ବର୍ଷ ଏଗୁଡ଼ିକ ଦୁଇ ଥର ଏହି ଉପକୂଳ ଅଞ୍ଚଳରେ ବାସ କରିବା ପାଇଁ ଆସନ୍ତି । ଉପକୂଳ ଅଞ୍ଚଳକୁ କଇଁଛମାନଙ୍କର ମନ୍ଥର ଆଗମନର ଦୃଶ୍ୟ ଅତ୍ୟନ୍ତ କୌତୂହଳ ପୂର୍ଣ୍ଣ । ଏଗୁଡ଼ିକ ବାଲିରେ ଗାତ କରି ନିରାପଦରେ ବାସ କରିବା ଉଦ୍ୟମ କରନ୍ତି । ଏହା ପରେ ଏଗୁଡ଼ିକ ବାସ କରିଥିବା ଗାତ ଗୁଡ଼ିକରେ ୮୦ ରୁ ୧୦୦ ପର୍ଯ୍ୟନ୍ତ କୋମଳ ତଥା ଛୋଟ ଅଣ୍ଡା ଦିଅନ୍ତି । ଏହା ରାତି ସାରା ଚାଲିଥାଏ । ଅଣ୍ଡା ଦେବା ପରେ ସେଗୁଡ଼ିକ ବାଲିରେ ଘୋଡ଼ାଇ ଦେଇ କଇଁଛ ସବୁ ପୁଣି ସମୁଦ୍ର ଭିତରକୁ ଫେରିଯାନ୍ତି । ସେମାନଙ୍କର ଏ ପ୍ରକାର ଅଣ୍ଡା ଦେବା , ରହିବା, ଓ ଖାଇବା ପ୍ରଭୃତି ବିଷୟରେ ବନ ବିଭାଗ ତରଫରୁ ଗବେଷଣା କରାଯାଉଛି । ପ୍ରତିବର୍ଷ ୩ ଲକ୍ଷ ସମୁଦ୍ର କଇଁଛ ଆସି ଏହି ପ୍ରକାର କାର୍ଯ୍ୟ କରିଥାନ୍ତି ।

ଏହି ସମୁଦ୍ର କଇଁଛଗୁଡ଼ିକୁ ସଂରକ୍ଷଣ କରିବା ପାଇଁ ଏବଂ ସେଗୁଡ଼ିକୁ ଧରି ମାରି ନେଉଥିବା ବ୍ୟକ୍ତିମାନଙ୍କଠାରୁ ରକ୍ଷା କରିବା ପାଇଁ ସମୁଦ୍ର ଉପକୂଳରେ ଜଗୁଆଳମାନେ ଜଗି ରହି ଥାଆନ୍ତି । ଏହି କାର୍ଯ୍ୟରେ ବନ ବିଭାଗ ଓ ପୁଲିସ ବିଭାଗର ସ୍ଥାନୀୟ କର୍ମଚାରୀମାନେ ସାହାଯ୍ୟ କରନ୍ତି । ସମୁଦ୍ର କୂଳରେ ଜାତୀୟ ପାର୍କ ନିର୍ମାଣ କରି ଏହି ପ୍ରକାର ସାମୁଦ୍ରିକ ଜୀବଗୁଡ଼ିକର ସଂରକ୍ଷଣର ବ୍ୟବସ୍ଥା କରିବା ପାଇଁ ପ୍ରସ୍ତାବ ରହିଛି ।

୨୧ ତାରିଖ ଦିନ ଏହି ଅଞ୍ଚଳକୁ ବନ ବିଭାଗର ଅତିରିକ୍ତ ମୁଖ୍ୟ ସଂରକ୍ଷକ (ବନ୍ୟ ଜନ୍ତୁ ବିଭାଗ) ଓ ବନ୍ୟଜନ୍ତୁ ସଂରକ୍ଷକ ଶ୍ରୀ ଏସ୍. କେ. ପଟ୍ଟନାୟକ ପରିଦର୍ଶନରେ ଯାଇ ଏହି ସମୁଦ୍ର କଇଁଛଗୁଡ଼ିକର ସଂରକ୍ଷଣ ବିଷୟ ବୁଝିଥିଲେ । ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ କଇଁଛଗୁଡ଼ିକର ଗତିବିଧି ଉପରେ ଚଳଚ୍ଚିତ୍ର ଓ ଫଟୋଚିତ୍ର ଉତ୍ତୋଳନ କରିବା କରାଯାଇଥିଲା ।

———

## ରୋଟରେକ୍ଟ-କ୍ଲବ ପ୍ରମାଣ ପତ୍ର ପ୍ରଦାନ

ଗତ ଜାନୁଆରୀ ୨୪ ତାରିଖ ସନ୍ଧ୍ୟାରେ ସୂଚନା ଭବନଠାରେ ବି: ଜେ: ବି: କଲେଜ ରୋଟରେକ୍ଟ କ୍ଲବର ପ୍ରମାଣ ପତ୍ର ପ୍ରଦାନ ଉତ୍ସବରେ ରୋଟାରୀ କ୍ଲବ ସଭାପତି ରୋଟାରିଆନ୍ ଧୀରେନ୍ଦ୍ର ନାଥ ପାଢ଼ୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏଥିରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ସୂଚନା ଓ ଲୋକ ସଂପର୍କ ବିଭାଗ ଶାସନ ସଚିବ ଶ୍ରୀ ବିବେକ ପଟ୍ଟନାୟକ କହିଲେ ଯେ ସେ ରୋଟରେକ୍ଟ କ୍ଲବର ନୀତି ନିୟମ ଓ କାର୍ଯ୍ୟକ୍ରମରେ ସନ୍ତୋଷ ପ୍ରକାଶ କରିଛନ୍ତି ଏବଂ ଦେଶର ଯୁବକମାନେ ଭବିଷ୍ୟତର ନାଗରିକ ହିସାବରେ ନିଜ ନିଜ କର୍ତ୍ତବ୍ୟ ସଂପାଦନରେ ନ୍ୟାଯ୍ୟ ପ୍ରତିପାଦନ କରିବେ ବୋଲି ଆଶା କରନ୍ତି । ନେତାଜୀ ସୁବାସ ଚନ୍ଦ୍ର ବୋଷଙ୍କ ଜନ୍ମ ଦିବସରେ ଏହି ଉତ୍ସବ ଅନୁଷ୍ଠିତ ହେଉଥିବାରୁ କ୍ଲବର ସଦସ୍ୟମାନେ ହତାଶ ଭାବ ବର୍ଜନ କରି ଜୀବନରେ ଉଚ୍ଚ ଆଶା ଓ ଆକାଂକ୍ଷା ରଖି ଯେ ଯେଉଁ ଦାୟିତ୍ୱରେ ଅଛନ୍ତି, ସେହି ଦାୟିତ୍ୱ ସଫଳତାର ସଫଳୀକୃତ ହେବା ପାଇଁ ପରାମର୍ଶ ଦେଇଥିଲେ ଏବଂ ଏ ଦିଗରେ ବିଶିଷ୍ଟ ଦାର୍ଶନିକ ପ୍ଲେଟୋଙ୍କ ବାଣୀ ସ୍ମରଣ କରାଇ ଦେଇଥିଲେ । ଶ୍ରୀ ପଟ୍ଟନାୟକ ଉକ୍ତ କ୍ଲବ ଦ୍ୱାରା ପ୍ରକାଶିତ ସ୍ମରଣିକା ଉନ୍ମୋଚନ କରି କ୍ଲବର ସଭାପତିଙ୍କୁ ସଂଗଠନର ପ୍ରମାଣ ପତ୍ର ପ୍ରଦାନ କରିଥିଲେ । ରୋଟେରେକ୍ଟ କମିଟିର ଜିଲ୍ଲା ଚେୟାରମ୍ୟାନ ରୋଟାରିଆନ ରାଧିକାନନ୍ଦ ନୂତନ ସଦସ୍ୟମାନଙ୍କୁ କ୍ଲବର ସଦସ୍ୟ ଭାବରେ ଉପପାଦନ କରିଥିଲେ ଏବଂ ରୋଟାରୀଆନ ଜି: କେ: ଦାସ ରୋଟରେକ୍ଟ କ୍ଲବ ସଭାପତି ରୋଟାରୀଆନ ସି: ଚନ୍ଦ୍ରଶେଖରଙ୍କୁ ସନଂଦ ଓ କାର୍ଯ୍ୟ ପରିଚାଳନା ପାଇଁ ଆବଶ୍ୟକୀୟ ସଂକେତ ଗୋଲଡ଼ ହେମର ପ୍ରଦାନ କରିଥିଲେ । ରୋଟାରିଆନ ଚନ୍ଦ୍ର ଶେଖର କହିଲେ ଯେ ଚଳିତ ବର୍ଷରେ କ୍ଲବର ଅଧିକ ସଦସ୍ୟ ସଂଗ୍ରହ କଲେଜ ହତା ମଧ୍ୟରେ ରକ୍ତ ସଂଗ୍ରହ, ଚକ୍ଷୁ ଚିକିତ୍ସା, ଦନ୍ତ ଚିକିତ୍ସା, ଶିବିର ଆୟୋଜନ, ଶାରୀରିକ ଅକ୍ଷମ ପିଲାଙ୍କୁ ସବୁ ନିମନ୍ତେ ଉତ୍ସାହିତ କରି ସାହାଯ୍ୟ ପ୍ରଦାନ, ଭୁବନେଶ୍ୱର ଠାରେ ଥିବା ଦୃଷ୍ଟିହୀନ ସ୍କୁଲ ଛାତ୍ର ଛାତ୍ରୀଙ୍କୁ ବିଭିନ୍ନ ବିଷୟରେ ସାହାଯ୍ୟ ପ୍ରଦାନ, ବିଶ୍ୱ ଯୁବ ଭାବ ଆଦାନ ପ୍ରଦାନରେ ଯୋଗଦାନ ବ୍ୟତୀତ ରୋଟାରୀ କ୍ଲବ କାର୍ଯ୍ୟକ୍ରମରେ ସହଯୋଗ କରିବା ପାଇଁ ଲକ୍ଷ୍ୟ ରଖା ଯାଇଛି । କ୍ଲବ ପରିଚାଳନା ଦାୟିତ୍ୱରେ ଥିବା ରୋଟାରୀଆନ ରଘୁନାଥ ପଣ୍ଡା ବାର୍ଷିକ ବିବରଣୀ ପାଠ କରି ଉକ୍ତ କ୍ଲବର ଆଠ ଦଫା ନୀତି ଓ ଚାରୋଟି ମୁଖ୍ୟ ଲକ୍ଷ୍ୟ ଘୋଷଣା କରିଥିଲେ । ସେବା, ଶିକ୍ଷା, ଶୃଙ୍ଖଳା, ଓ ସଦ୍‌ଭାବ ସ୍ଥାପନର ଉନ୍ନତି ଦିଗରେ କାର୍ଯ୍ୟ କରିବା ପାଇଁ କରିଥିବା ରକ୍ତ ସଂଗ୍ରହ, ଶିକ୍ଷା, ସାହାଯ୍ୟ ଓ ବିଭିନ୍ନ ପ୍ରକାର ସାମାଜିକ ସେବାର ହିସାବ ପ୍ରଦାନ କରିଥିଲେ । ଏହି କ୍ଲବ ଏଠାରେ ଦେଢ଼ ବର୍ଷ ହେଲା ପ୍ରତିଷ୍ଠିତ ।

ଉଲ୍ଲେଖନୀୟ କାର୍ଯ୍ୟ ମଧ୍ୟରେ ରେଡ୍‌କ୍ରସ ପାଇଁ ୫୦ ବୋତଲ ରକ୍ତ ସଂଗ୍ରହ, ସୁରିଛକ ଓ ଓଲଟପୁରରେ ଚକ୍ଷୁ ଚିକିତ୍ସା ଶିବିର ଓ ପରିବେଶକୁ ପରିଷ୍କାର ପରିଚ୍ଛନ୍ନ ରଖିବା ପାଇଁ ଉଦ୍ୟମ କରିଛନ୍ତି । ସଭାପତି ରୋଟାରୀଆନ ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ କହିଲେ ଯେ ରୋଟରେକ୍ଟ କ୍ଲବଗୁଡ଼ିକ ବି: ଜେ: ବି: , ରମାଦେବୀ କଲେଜରେ ସ୍ଥାପନ କରା-ଯାଇଛି । ସେହିପରି ଓ: ୟୁ: ଏ: ଟି: ବିଶ୍ୱବିଦ୍ୟାଳୟରେ ମଧ୍ୟ କ୍ଲବ ସ୍ଥାପନ କରାଯାଇ ଦେଶରେ ଯୁବଶକ୍ତିକୁ ଦେଶର ନାଗରିକ ହିସାବରେ ଗଢ଼ି ଶିକ୍ଷା, ଶୃଂଖଳା, ସେବା ଓ ସଦ୍‌-ଭାବର ଉନ୍ନତି ଦିଗରେ ଆଗେଇ ନେବା ପାଇଁ ସଦସ୍ୟମାନେ ଆଗେଇ ଆସନ୍ତୁ । ସଭାପତି ଅଭିଭାଷଣରେ ରୋଟାରୀୟାନ ଶ୍ରୀ ପାଢ଼ୀ ରୋଟାରୀ କ୍ଲବର ଆଦର୍ଶ, ଲକ୍ଷ୍ୟ ଓ ନୀତି ଘୋଷଣା କରିଥିଲେ । କ୍ଲବର ସଦସ୍ୟ ଓ ସଦସ୍ୟା ସିମି ମିଶ୍ର, ସଂଦିପ ହୋତା, ସଞ୍ଜୟ ଧାବନ ପ୍ରମୁଖ ୨୬ ଜଣ ଉତ୍ସବର ଆୟୋଜନ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରଦାନ କରିଥିଲେ । ଏହି ଉତ୍ସବରେ ଭୁବନେଶ୍ୱର କ୍ଲବର ସଦସ୍ୟ; ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳାସବୁ ଯୋଗ ଦେଇଥିଲେ । କଲେଜ ଅଧ୍ୟକ୍ଷ ଡ଼: ଏସ୍: କେ: ରାୟ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ।

## ୧୯୮୫ ମସିହା ପାଇଁ କେନ୍ଦୁପତ୍ର ମୂଲ୍ୟ

ଓଡ଼ିଶା କେନ୍ଦୁପତ୍ର (ବ୍ୟବସାୟ ନିୟନ୍ତ୍ରଣ) ଅଧି ନିୟମ, ୧୯୬୧ (୧୯୬୧ ର ଓଡ଼ିଶା ଅଧି ନିୟମ ୨୮) ର ଧାରା ୪ ର ଉପଧାରା (୧) ଅନୁସାରେ ରାଜ୍ୟ ସରକାର ଉପଦେଷ୍ଟା କମିଟିଙ୍କ ସହ ପରାମର୍ଶ ପରେ ନିମ୍ନଲିଖିତ ସର୍ବ ନିମ୍ନ ମୂଲ୍ୟ ନିର୍ଦ୍ଧାରଣ କରୁଛନ୍ତି । ଏହି ମୂଲ୍ୟରେ ସରକାର ବା ତାଙ୍କର କୌଣସି ଭାରପ୍ରାପ୍ତ ଅଫିସର ୧୯୮୫ ମସିହାରେ ରାଜ୍ୟ ମଧ୍ୟସ୍ଥ ସମସ୍ତ ୟୁନିଟରେ କେନ୍ଦୁପତ୍ର କିଣିବେ ।

(୧) ତୋଳାଳୀଙ୍କଠାରୁ ଦୁଇ ପଇସାକୁ ବିଡ଼ି ତିଆରି ଉପଯୋଗୀ ୧୨ (ବାର) ଟି କଞ୍ଚାପତ୍ର ବିଶିଷ୍ଟ ଏକ କେରୀ (ଦୁଇଟି ଆବରଣ ପତ୍ର ସମେତ) ଏବଂ (୨) ଉତ୍ପାଦନ କାରୀଙ୍କ-ଠାରୁ ପ୍ରସେସ୍ ହୋଇ ସାରିଥିବା ଏକ କୁଇଣ୍ଟାଲ ଶୁଖିଲା ପତ୍ର ବସ୍ତାକୁ ଟ ୧୫୦.୦୦ (ଏକଶତ ପଚାଶ ଟଙ୍କା) ମାତ୍ର, କିନ୍ତୁ ସର୍ତ୍ତ ରହିବ ଯେ ଶୁଖିଲା ପତ୍ର ଯୋଗାଉଥିବା ଉତ୍ପାଦନକାରୀ-ମାନେ ସେହି ପତ୍ରଗୁଡ଼ିକୁ ଜଂଗଲ ବିଭାଗ ଦ୍ୱାରା ସ୍ୱୀକୃତ କେନ୍ଦ୍ରରେ ପ୍ରସେସଂ କରାଇଥିବେ ।

## ଢେଙ୍କାନାଳ ଜିଲ୍ଲାରେ ଅକ୍ଷୟ ଶକ୍ତି ବିକାଶ କାର୍ଯ୍ୟକ୍ରମ

ରାଜ୍ୟ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ଅଧୀନରେ କାର୍ଯ୍ୟ କରୁଥିବା ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା ଭାରତ ହେଭି ଇଲେକ୍‌ଟ୍ରିକାଲ୍‌ସ ଲିମିଟେଡ୍ ଓ କେନ୍ଦ୍ର ସରକାରଙ୍କ ଅଣ-ପାରଂପାରିକ ଶକ୍ତି ଉତ୍ସ ବିଭାଗର ମିଳିତ ଉଦ୍ୟମରେ ଢେଙ୍କାନାଳ ଜିଲ୍ଲାରେ ଅକ୍ଷୟ ଶକ୍ତି ବିକାଶ ଲାଗି ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନିଆ ଯାଇଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ସୂର୍ଯ୍ୟରଶ୍ମୀର ଶକ୍ତି ଆହରଣକରି (ଫୋଟୋ ଭୋଲଟାଇ-ପାଓ୍ୱାର) ସୋରିଷିଆପଦା ଗ୍ରାମରେ ୯ଟି ରାସ୍ତା ଆଲୋକ ଓ ଚିତ୍ତ ବିନୋଦନ କେନ୍ଦ୍ରରେ ୬ଟି ଆଲୋକର ବ୍ୟବସ୍ଥା କରାଯାଇଛି । ଏଥି ସହିତ ସେଠାରେ ସୌର ଶକ୍ତି ଦ୍ୱାରା ପରିଚାଳିତ ଏକ ପାଣି ପଂପ ଓ ଗୋଟିଏ ଟେଲିଭିଜନ ସେଟ୍ ମଧ୍ୟ ସ୍ଥାପନ କରାଯାଇଛି । କୋଲ୍‌ହା ଗ୍ରାମରେ ଏହି ଶକ୍ତି ଦ୍ୱାରା ପରିଚାଳିତ ୪ଟି ରାସ୍ତା ଆଲୋକ ଓ ଚିତ୍ତ ବିନୋଦନ କେନ୍ଦ୍ରରେ ୩ଟି ଆଲୋକର ମଧ୍ୟ ବ୍ୟବସ୍ଥା କରାଯାଇଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ କଣିଆ ଗ୍ରାମକୁ ପାନୀୟ ଜଳ ଯୋଗାଇ ଦେବା ପାଇଁ ୨ଟି ପବନ ଚାଳିତ କଳ ମଧ୍ୟ ସ୍ଥାପନ କରାଯାଇଛି । କପିଳାସ କନ୍ୟାଶ୍ରମର ପ୍ରାୟ ୨ ହେକ୍‌ଟର ଜମିରେ ପରିବା ଚାଷ ନିମନ୍ତେ ଏପରି ୨ଟି କଳ ବସାଯାଇ ପାରିଛି । ଜହ୍ନିଡେିକା ଗ୍ରାମରେ ୪୫ ଘନ ମିଟର ବିଶିଷ୍ଟ ଏକ ସର୍ବସାଧାରଣ ଗୋବର ଗ୍ୟାସ ପ୍ଲାଣ୍ଟ ନିର୍ମାଣ କରାଯାଇଛି । ଏହି ପ୍ଲାଣ୍ଟରୁ ଗ୍ରାମର ୩୦ଟି ପରିବାରକୁ ଦୈନିକ ୩ ଘଣ୍ଟା ରୋଷେଇ ପାଇଁ ଗ୍ୟାସ ଯୋଗାଇ ଦିଆଯାଇ ପାରୁଛି । ଢେଙ୍କାନାଳ ଦୁଗ୍ଧ ଶୀତଳୀକରଣ କେନ୍ଦ୍ରଠାରେ ପ୍ରତ୍ୟେହ ୧୦ ହଜାର ଲିଟର ପାଣି ଗରମ କରାଯାଇପାରିବା ଭଳି ସୌରଶକ୍ତି ଚାଳିତ ଏକ ଯନ୍ତ୍ର ମଧ୍ୟ ସ୍ଥାପନ କରା-ଯାଇଛି ।

## ବରଗଡ଼ ମୁଖ୍ୟ କେନାଲ ଘାଇ

ରାଜସ୍ୱ ବୋର୍ଡ ସଭ୍ୟ ଶ୍ରୀ ବିଘ୍ନରାଜ ପଟେଲ ବରଗଡ଼ ମୁଖ୍ୟ କେନାଲ ଘାଇ ସମ୍ପର୍କରେ ତାଙ୍କ ଅଧ୍ୟକ୍ଷତାରେ ଗଠିତ ଅନୁସନ୍ଧାନ କମିଟିର ରିପୋର୍ଟ ସେଚ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକଙ୍କୁ ଜାନୁଆରୀ ୩୧ରେ ଅର୍ପଣ କରିଛନ୍ତି ।

ଗତବର୍ଷ ଅକ୍‌ଟୋବର ମାସ ୫ ତାରିଖ ଦିନ ବରଗଡ଼ ମୁଖ୍ୟ କେନାଲରେ ଏକ ଘାଇ ହେବା ଫଳରେ ସଂପୃକ୍ତ ଅଞ୍ଚଳର କ୍ଷତି ଘଟାଇଥିଲା । ଏହି ଘାଇର ତୁରନ୍ତ ମରାମତି ପାଇଁ ପଦକ୍ଷେପ ନିଆଯାଇ ତୁରନ୍ତ ଜଳ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ଏହି ଘାଇ ସମ୍ପର୍କରେ ଅନୁସନ୍ଧାନ କରି ଏକ ରିପୋର୍ଟ ଦେବାପାଇଁ ରାଜସ୍ୱ ବୋର୍ଡ ସଭ୍ୟଙ୍କ ଅଧ୍ୟକ୍ଷତାରେ ରାଜ୍ୟ ସରକାର ଏହି କମିଟି ନିଯୁକ୍ତ କରିଥିଲେ ।

## ଯୋଜନା ମଣ୍ଡପ ପ୍ରଶଂସିତ

ଗତ ଜାନୁଆରୀ ୨୬ ତାରିଖରୁ ଆଦିବାସୀ ପଡ଼ିଆରେ ଅନୁଷ୍ଠିତ ହେଉଥିବା ରାଜ୍ୟ ସ୍ତରୀୟ ପ୍ରଦର୍ଶନୀ ମଧ୍ୟରେ ଆଦିବାସୀ ଅଧ୍ୟୁଷିତ କେନ୍ଦୁଝର, ମୟୂରଭଞ୍ଜ, କୋରାପୁଟ, ସୁନ୍ଦରଗଡ଼, ଫୁଲବାଣୀ ଓ ଗଞ୍ଜାମ ଜିଲ୍ଲାଗୁଡ଼ିକର ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା ମଣ୍ଡପଗୁଡ଼ିକ ଆଦିବାସୀ ଜନ ଜୀବନ ଓ ବିଭିନ୍ନ ଉନ୍ନୟନ ବିଷୟବସ୍ତୁରେ ଭରପୂର ଓ ଦର୍ଶକମାନଙ୍କ ଦ୍ୱାରା ବିଶେଷ ପ୍ରଶଂସିତ ହେଉଛି ।

କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ଗୋନାସିକା ଜୁଆଙ୍ଗ ଉନ୍ନୟନ ଅଞ୍ଚଳର କ୍ଷେତ୍ରଫଳ ୧,୩୦୩.୪୬ ହେକ୍‌ଟର, ଜୁଆଂଗ ସଂଖ୍ୟା ୧୨,୭୨୪. ଗ୍ରାମ ସଂଖ୍ୟା ୧୨୪, ପରିବାର

ସଂଖ୍ୟା ୨୩୪, ପରିଗୃହୀତ ଗ୍ରାମ–୨୦, ଶିକ୍ଷିତ ସଂଖ୍ୟା ଶତକଡ଼ା ୨.୫ । ଉକ୍ତ ଅଞ୍ଚଳରେ ୧୧,୧୪୬.୬୫ ହେକ୍ଟର ଜଙ୍ଗଲ, ୧୩.୩ କି ମି କଚ୍ଚା ରାସ୍ତା ରହିଛି । ଜ୍ଞାନ ମନ୍ଦିର ୧୪, ପ୍ରୌଢ଼ଶିକ୍ଷା କେନ୍ଦ୍ର ୧୪, ଗୋଟିଏ ପଶୁ ଚିକିତ୍ସାଳୟ, ବୃହଦାକାର ସମବାୟ ସମିତି ଓ ଡାକ ଘର ଅଛି । ଜୁଆଂଙ୍ଗ ଆଦିବାସୀମାନେ ଅତି ପୁରାତନ ଓ ବହୁବର୍ଷ ଧରି କେନ୍ଦୁଝର ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବାସ କରନ୍ତି । ଏମାନେ ଅତି ନିର୍ଭରଶୀଳ, ସ୍ପଷ୍ଟବାଦୀ ଓ ବନ୍ଧୁବତ୍ସଳ । ଏହି ଅଞ୍ଚଳରେ ସଂଗଠିତ ୨୪ ଟି ଜ୍ଞାନମନ୍ଦିର ମାଧ୍ୟମରେ ଏହି ଜୁଆଂଗମାନଙ୍କର ସର୍ବବିଧ ଉନ୍ନତି ଘଟିଛି । ପ୍ରତି ଜ୍ଞାନ ମନ୍ଦିରରେ ଜଣେ ପୁରୁଷ କର୍ମୀ ଓ ଜଣେ ନାରୀ କର୍ମୀ ରହି ଅଞ୍ଚଳର ସମୂହ କଲ୍ୟାଣ, ନାରୀ ଓ ଶିଶୁ କଲ୍ୟାଣ ଏବଂ ଧନ୍ଦାମୂଳକ କାର୍ଯ୍ୟକ୍ରମ ଗ୍ରହଣ କରନ୍ତି । ପୁରୁଷ କର୍ମୀ ସ୍ୱେଚ୍ଛାସେବୀ, ନାରୀ କର୍ମୀ ଜ୍ଞାନ ମାଆଁ ଭାବରେ ପରିଚିତ । ସେମାନେ ଯୋଜନା ଅଧିକାରୀ ଓ ସର୍ବସାଧାରଣଙ୍କ ମନରେ ସମନ୍ୱୟ ସ୍ଥାପନ କରି ସ୍ୱେଚ୍ଛାସେବୀ ଭାବେ କାମ କରନ୍ତି । ଏହାଦ୍ୱାରା ଉକ୍ତ ଅଞ୍ଚଳର କୃଷି, ସମବାୟ, ଶିଳ୍ପ, ସ୍ୱାସ୍ଥ୍ୟ, ଶିକ୍ଷା ପ୍ରଭୃତିର ସର୍ବବିଧ ଉନ୍ନତି ସାଧନ କରନ୍ତି । ଏମାନଙ୍କ ଦ୍ୱାରା ଉକ୍ତ ଅଞ୍ଚଳରେ ସୁସ୍ଥ ବାୟୁ ମଣ୍ଡଳ ସୃଷ୍ଟି ହୋଇ ପାରିଛି ।

ଯାବତୀୟ ଉନ୍ନତି ମୂଳରେ ଜ୍ଞାନ ମନ୍ଦିରର ପ୍ରେରଣା ରହିଛି । ପୂର୍ବର 'ମଣ୍ଡଘର' ଗୁଡ଼ିକ ଯେପରି ସାଂସ୍କୃତିକ କାର୍ଯ୍ୟକ୍ରମର ପୀଠ, ଜ୍ଞାନ ମନ୍ଦିର ଗୁଡ଼ିକ ନବ ଜାଗରଣ ଓ ଚେତନାର ପୀଠ ଭାବେ କାମ କରୁଛି । କୃଷିର ଉନ୍ନତିପାଇଁ ପ୍ରତ୍ୟେକ ଜୁଆଂଗ ପରିବାରକୁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଅଢ଼େଇ ଏକର ଲେଖାଏଁ ଜମି ଯୋଗାଇଦେବା ସଂଗେ ସଂଗେ ଖରିଫ୍ ଓ ରବି ପାଇଁ ଚାଷୀକୁ ଆଗତୁରା ସାର, ଔଷଧ, ଓ ଋଣ ଯୋଗାଇଦିଆଯାଉଛି । ଜଳସେଚନ ସୁବିଧା, ହଳ ଲଂଗଳ ଆଦି ଉପକରଣ ଯୋଗାଇ ଦିଆଯାଇଛି । ଏହା ବ୍ୟତୀତ ପ୍ରତି ପରିବାରର ଜଣକୁ ଟସର ସୂତା ଯୋଗାଇ ଦେବା ଦ୍ୱାରା ପରିବାରର ଆୟ ମାସକୁ ମାସ ପ୍ରାୟ ଦୁଇ ଶହ ଟଙ୍କାରୁ ତିନି ଶହ ଟଙ୍କା ପର୍ଯ୍ୟନ୍ତ ବର୍ଦ୍ଧିତ କରିବା ପାଇଁ ପଦକ୍ଷେପ ନିଆଯାଇଛି । ଏମାନେ ଜଂଗଲ ଜାତ ଦ୍ରବ୍ୟ ସଂଗ୍ରହ କରି ବ୍ୟବସାୟ କରନ୍ତି । ଗ୍ରାମ୍ୟ ରାସ୍ତା, ବିଦ୍ୟୁତିକରଣ, ପାନୀୟ ଜଳ ଯୋଗାଣ, ସମବାୟ ସମିତି ସ୍ଥାପନ, ବୃକ୍ଷ ରୋପଣ, ନୀତି ଶିକ୍ଷା, ସାମାଜିକ ଉନ୍ନତି, ସ୍ୱାସ୍ଥ୍ୟ ଓ ଲୋକସେବାର ବ୍ୟବସ୍ଥା ଗ୍ରହଣ କରାଯାଉଛି । ଜୁଆଂଗମାନେ ମେଣ୍ଢା ପାଳନ, ଟସର ଚାଷ ହସ୍ତ ଶିଳ୍ପ, ଦରଜୀ କାମ କରି ଆର୍ଥିକ ଉନ୍ନତି କରିବା ସଂଗେ ସଂଗେ ସଂଞ୍ଚୟ ଯୋଜନାରେ ଆଗ୍ରହ ପ୍ରକାଶ କରି ଡାକଘର ପାସ୍ ବହିରେ ଅର୍ଥ ସଂଚୟ ଅଭ୍ୟାସ କରୁଛନ୍ତି । ଏହି ସମସ୍ତ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାରେ 'ଜ୍ଞାନ ମନ୍ଦିର' ନାମକ ସଂଗଠନର ଯଥେଷ୍ଟ ଅବଦାନ ରହିଛି । ଏହାଦ୍ୱାରା ଜୁଆଂଗମାନଙ୍କର ସାମାଜିକ ଓ ଅର୍ଥନୈତିକ ଉନ୍ନତି ଘଟିବା ସଂଗେ ସଂଗେ ପାରଂପରିକ ରୀତି-ନୀତି ରକ୍ଷା କରାଯାଇ ପାରୁଛି । ଏହିସବୁ ବିଷୟ ବସ୍ତୁ ନିପୁଣ ଭାବରେ କେନ୍ଦୁଝର ଜିଲ୍ଲାର ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା ପ୍ରଦର୍ଶନୀ ମଣ୍ଡପରେ ପ୍ରଦର୍ଶିତ ହୋଇଛି ।

---

## ରାଜ୍ୟସ୍ତରୀୟ ଆଦିବାସୀ ପ୍ରଦର୍ଶନୀ

ଫେବୃଆରୀ ୨ ତାରିଖ ସଂଧ୍ୟାରେ ଆଦିବାସୀ ପଡ଼ିଆରେ ସପ୍ତାହବ୍ୟାପୀ ଅନୁଷ୍ଠିତ ରାଜ୍ୟସ୍ତରୀୟ ଆଦିବାସୀ ପ୍ରଦର୍ଶନୀର ଉଦ୍‌ଯାପନ ଉତ୍ସବରେ ପୌରୋହିତ୍ୟକରି ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାମଚନ୍ଦ୍ର ଉଲ୍‌କା କହିଲେ ଯେ ଆଦିବାସୀ ସଂପ୍ରଦାୟର ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଅଭିବୃଦ୍ଧି ଉଦ୍ଦେଶ୍ୟରେ ଏହି ପ୍ରଦର୍ଶନୀ ଏଠାରେ ୧୯୮୦ ମସିହାରୁ ନୂତନ ଦିଗ୍‌ଦର୍ଶନ ନେଇ ଅନୁଷ୍ଠିତ ହୋଇଆସୁଛି । ସ୍ୱାଧୀନତା ସଂଗ୍ରାମୀ ଲକ୍ଷ୍ମଣ ନାୟକ, ବିର୍ଶା ମୁଣ୍ଡା ଓ ପରମ ଭକ୍ତ ଭୀମ ଭୋଇଙ୍କ ପରି ମହାନ୍ ଆଦିବାସୀ ସନ୍ତାନ ଆମ ଦେଶରେ ଜନ୍ମ ଗ୍ରହଣ କରିଛନ୍ତି । ସେମାନଙ୍କ ଦାୟାଦ ହିସାବରେ ପ୍ରତ୍ୟେକ ଆଦିବାସୀ ସଂପ୍ରଦାୟ ସେମାନଙ୍କ ସର୍ବବିଧ ଉନ୍ନତି ସାଧନ କରିବାପାଇଁ ମିଳିତ ଉଦ୍ୟମ କରିବାକୁ ହେବ । ସେହି ଉଦ୍ଦେଶ୍ୟରେ ଏହି ପ୍ରଦର୍ଶନୀର ଆୟୋଜନ ଏଥିରୁ ଯଥେଷ୍ଟ ପ୍ରେରଣା ମିଳିଛି । ବିଭାଗୀୟ କର୍ମକର୍ତ୍ତାମାନେ ଆଦିବାସୀ-ମାନଙ୍କ ଉନ୍ନତି ଓ ପ୍ରଗତି ଦିଗରେ ନିସ୍ୱାର୍ଥ ଉଦ୍ୟମ କରୁଥିବାରୁ ଶ୍ରୀଉଲ୍‌କା ସନ୍ତୋଷ ପ୍ରକାଶ କରିଥିଲେ ।

ବିଭାଗୀୟ ଶାସନ ସଚିବ ଡଃ ସୀତାକାନ୍ତ ମହାପାତ୍ର ଆବେଗପୂର୍ଣ୍ଣ ଭାଷାରେ ଆଦିବାସୀ ସଂପ୍ରଦାୟଗୁଡ଼ିକର ସାଂସ୍କୃତିକ, ସାମାଜିକ, ଅର୍ଥନୈତିକ ଅଭିବୃଦ୍ଧି କାମନାକରି ବିଭାଗର ଆଭିମୁଖ୍ୟ, ପ୍ରଦର୍ଶନୀର ଉଦ୍ଦେଶ୍ୟ ଓ କର୍ମକର୍ତ୍ତାମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ଉଲ୍ଲେଖ କରି ଉଦ୍‌ବୋଧନ ଦେଇଥିଲେ ।

ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ଗିରୀଶ ଚନ୍ଦ୍ର ପାତ୍ର ଭବିଷ୍ୟତରେ ଏଠାରେ ଦିଲ୍ଲୀର ପ୍ରଗତି ମଇଦାନ ପରି ସ୍ଥାୟୀ ପ୍ରଦର୍ଶନୀ ମଣ୍ଡପ ଗଠନ, ବର୍ତ୍ତମାନ ପ୍ରଦର୍ଶିତ ଆଦିବାସୀ ମଣ୍ଡପ, ବିଭିନ୍ନ ବିଭାଗ ଓ ବ୍ୟକ୍ତିବିଶେଷ, ବିଶେଷ କରି ଆଦିବାସୀମାନଙ୍କ ସାହାଯ୍ୟ ଓ ସହଯୋଗ ବିଷୟ ଉଲ୍ଲେଖ କରି ଉଦ୍‌ବୋଧନ ଦେଇଥିଲେ ।

ପ୍ରଦର୍ଶନୀରେ ସର୍ବୋତ୍‌କୃଷ୍ଟ ବିବେଚିତ ହୋଇଥିବା ପାରଳାଖେମୁଣ୍ଡି ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ମଣ୍ଡପ ପ୍ରଥମ, ମୟୂରଭଞ୍ଜର ଉକ୍ତ ସଂସ୍ଥା ମଣ୍ଡପ ଦ୍ୱିତୀୟ, ବନ ବିଭାଗ ମଣ୍ଡପ ତୃତୀୟ ଏବଂ ଇନ୍ଦିରା ଓ ଓଡ଼ିଶା ଆଦିବାସୀ ମଣ୍ଡପ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ପୁରସ୍କୃତ ହୋଇଥିଲେ । ସାଂସ୍କୃତିକ କାର୍ଯ୍ୟକ୍ରମରେ ସୁନ୍ଦରଗଡ଼ ଜିଲ୍ଲାର ଓରାମ ନୃତ୍ୟ ପ୍ରଥମ, କୋରାପୁଟର ଗଦବା ଓ କୋୟାନୃତ୍ୟ ଯଥାକ୍ରମେ ଦ୍ୱିତୀୟ ଓ ତୃତୀୟ ଏବଂ କୁଟିଆର କିଶାନ କରମାମାନେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ପୁରସ୍କୃତ ହୋଇଥିଲେ । ବିଭିନ୍ନ ବିଦ୍ୟାଳୟର ପରୀକ୍ଷା ଫଳ, ବୈଷୟିକ ଶିକ୍ଷା ଓ ସାମୂହିକ ଉନ୍ନତି ଯୋଗୁଁ ଶ୍ରୀଉଲ୍‌କା ଶିକ୍ଷାନୁଷ୍ଠାନଗୁଡ଼ିକର ପ୍ରଗତି ପାଇଁ ପ୍ରଧାନ ଶିକ୍ଷକ-ମାନଙ୍କୁ ଆର୍ଥିକ ପୁରସ୍କାର ଏବଂ ଛାତ୍ରଛାତ୍ରୀମାନଙ୍କୁ ପ୍ରଶଂସାପତ୍ର ପ୍ରଦାନ କରିଥିଲେ ।

---

## ଖଡ଼ିଆଳଠାରେ ନୂଆ ସୂଚନା କେନ୍ଦ୍ର

ଗତ ଡିସେମ୍ବର ୨୬ ତାରିଖ ଦିନ କଳାହାଣ୍ଡି ଜିଲ୍ଲା ଖଡ଼ିଆଳଠାରେ ଏକ ନୂତନ ସୂଚନା କେନ୍ଦ୍ର ସୂଚନା ଓ ଲୋକ ସଂପର୍କ

ବିଭାଗ ପକ୍ଷରୁ ଉଦ୍‌ଘାଟିତ ହୋଇଛି । ବିଭାଗୀୟ ଶାସନ ସଚିବ ଶ୍ରୀ ଅଓ୍ଵଧନାରାୟଣ ତିଓ୍ଵାରୀ, ଡି. ସି. ଆର. (ଟେଲିଭିଜନ ସେଟ୍) ସହ ଏହି ସୂଚନା କେନ୍ଦ୍ର ଉଦ୍‌ଘାଟନକରି କହିଲେ ଯେ ସାଧାରଣତଃ ଜିଲ୍ଲା ତଥା ସଦର ମହକୁମାରେ ସୂଚନା କେନ୍ଦ୍ର ଖୋଲାଯାଇଥାଏ କିନ୍ତୁ ଉପାନ୍ତ ଅଂଚଳ ଖଡ଼ିଆଳଠାରେ ଏହା ଖୋଲିବାପାଇଁ ଓ. ଡି. ସି. ଆର. ସେଟ୍ ଯୋଗାଇ ଦିଆଯାଇ-ଥିବାରୁ ସେ ମୁଖ୍ୟମନ୍ତ୍ରୀଂକ ନିକଟରେ କୃତଜ୍ଞତା ପ୍ରକାଶ କରି-ଥିଲେ । ଖଡ଼ିଆଳର ଐତିହ୍ୟ ଓ ସଂସ୍କୃତିର ଅବତାରଣାକରି ଏହି ଅଂଚଳରେଥିବା ଅତୀତର ବହୁ ଲୁକ୍‌କାୟିତ ଅଧ୍ୟାୟ ଉନ୍ମୋଚନ କରାଯିବା ପାଇଁ ଉଦ୍ୟମ ହେଉଛି ବୋଲି. ଶ୍ରୀ ତିଓ୍ଵାରୀ ସୂଚନା ଦେଇଥିଲେ । କଳାହାଣ୍ଡି ଜିଲ୍ଲାପାଳ ଶ୍ରୀ ମୁରଲୀଧର ବେହୁରା ଏହି ଉତ୍ସବରେ ଅଧ୍ୟକ୍ଷତା କରିଥିଲେ । ପ୍ରଥମେ ସ୍ଥାନୀୟ ଏନ୍.ଏ. ସି. ଚେୟାରମ୍ୟାନ୍ ଶ୍ରୀ ବଳିଂଦମ ସିଂହଦେଓ ସ୍ଵାଗତ ଭାଷଣ ଦେଇଥିଲେ ଓ ପଂଚାୟତ ସମିତି ଚେୟାରମ୍ୟାନ୍ ଶ୍ରୀ ମଧୁସୂଦନ ଦାଶ ଉଦ୍‌ବୋଧନ ଦେଇ ଏ ଅଂଚଳର ବିଭିନ୍ନ ସମସ୍ୟା ସଂପର୍କରେ ସୂଚନା ଦେଇଥିଲେ । ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଫିସର ଶ୍ରୀ ବ୍ରଜ କିଶୋର ଦାସ ଧନ୍ୟବାଦ ଅର୍ପଣ କରିଥିଲେ । ନୂତନ ଟେଲିଭିଜନ କାର୍ଯ୍ୟକ୍ରମ ଦେଖିବାପାଇଁ ଜନସାଧାରଣଂକ ମଧ୍ୟରେ ପ୍ରବଳ ଉତ୍ସାହ ଦେଖାଦେଇଥିଲା । ବହୁ ସରକାରୀ ଓ ବେସରକାରୀ ଭଦ୍ରବ୍ୟକ୍ତି ଯୋଗଦାନ କରିଥିଲେ ।

---

## ଓଡ଼ିଶା ଜୁଡ଼ିସିଆଲ୍ କର୍ମଚାରୀ-ଆସୋସିଏ-ସନ୍‌ର ବାର୍ଷିକ ସମ୍ମିଳନୀ

ଗତ ଡିସେମ୍ବର ୧୦ ତାରିଖ ସଂଧ୍ୟାରେ କଟକ ସିଭିଲ୍ କୋର୍ଟ ସମ୍ମୁଖରେ ଓଡ଼ିଶା ଜୁଡ଼ିସିଆଲ କର୍ମଚାରୀ ଆସୋସିଏସନ୍‌ର ବାର୍ଷିକ ସମ୍ମିଳନୀରେ ସମ୍ମାନୀତ ଅତିଥିଭାବେ ଯୋଗଦେଇ ଅର୍ଥ ଓ ଆଇନ ମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକ କହିଲେ ଯେ ସରକାରୀ କର୍ମଚାରୀ ଏବଂ ସରକାରଂକ ମଧ୍ୟରେ ଉତ୍ତମ ବୁଝାମଣା, ଦାୟିତ୍ଵବୋଧ, କର୍ତ୍ତବ୍ୟନିଷ୍ଠା ବଳରେ ଗ୍ରାମାଂଚଳର ଦୁର୍ବଳ ଶ୍ରେଣୀ ଲୋକମାନଂକର ଆର୍ଥିକ ଅବସ୍ଥା ଉନ୍ନତି କଳ୍ପେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମଗୁଡ଼ିକ ସଫଳ ହେବା ସମ୍ଭବ ଏବଂ ଏ ଦିଗରେ ସରକାରୀ କର୍ମଚାରୀ-ମାନଂକ ଭୂମିକା ଅତୀବ ଗୁରୁତ୍ଵପୂର୍ଣ୍ଣ । କର୍ମଚାରୀମାନେ ସବୁ ସମୟରେ ବିଭିନ୍ନ ଉନ୍ନୟନମୂଳକ ତଥା ଜନହିତକର କାର୍ଯ୍ୟରେ ସରକାରଂକୁ ସାହାଯ୍ୟ କରିଆସିଛନ୍ତି ଏବଂ ଓଡ଼ିଶାର ଦ୍ରୁତ ଉନ୍ନତିପାଇଁ ସେମାନଂକର ଆନ୍ତରିକତା ଓ ଦକ୍ଷତା ଅକ୍ଷୁର୍ଣ୍ଣ ରଖିବାପାଇଁ ମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ସରକାରୀ କର୍ମଚାରୀମାନଂକର ଅଭାବ ଅସୁବିଧାଗୁଡ଼ିକ ବିଭିନ୍ନ ସମୟରେ ଓଡ଼ିଶାର ଆର୍ଥିକ ସ୍ଥିତିକୁ ଦୃଷ୍ଟି ଆଗରେ ରଖି ସହାନୁଭୂତିର ସହ ବିଚାର କରାଯାଇଥାଏ । କିନ୍ତୁ ଯଦି କୌଣସି ଦାବୀ ଦ୍ଵାରା କର୍ମଚାରୀ ଗୋଷ୍ଠୀ ଅସନ୍ତୁଷ୍ଟ ଅନୁଭବ କରନ୍ତି ତା'ହେଲେ ତାହା ଗଣତାନ୍ତ୍ରିକ ପଦ୍ଧତିରେ ଏବଂ ଶାନ୍ତିପୂର୍ଣ୍ଣ ବାତାବରଣ ମାଧ୍ୟମରେ ସମାଧାନ ପାଇଁ ସରକାର ସବୁବେଳେ ଆଗ୍ରହାନ୍ଵିତ ବୋଲି ଶ୍ରୀ ପଟ୍ଟନାୟକ କହିଥିଲେ ।

ପଂଚମ ବେତନ କମିଶନଂକ ରିପୋର୍ଟ ସଂପର୍କରେ ନିଜର ମତାମତଦେଇ ମନ୍ତ୍ରୀ କହିଲେ ଯେ କମିଶନଂକ ରିପୋର୍ଟକୁ ଭିତ୍ତିକରି ରାଜ୍ୟ ସରକାର ଅଷ୍ଟମ ଅର୍ଥ କମିଶନଂକ ନିକଟରେ ଦାବୀ ଉପସ୍ଥାପିତ କରିଥିଲେ ଏବଂ ଏହା କମିଶନଂକ ଦ୍ଵାରା ବହୁଳାଂଶରେ ଗୃହୀତ ହୋଇଛି । ନିଯୁକ୍ତିପ୍ରାପ୍ତ ଉଚ୍ଚସ୍ତରୀୟ ଅଫିସରମାନଙ୍କ ଦ୍ଵାରା କମିଶନଂକ ସୁପାରିଶଗୁଡ଼ିକ ନିକଟରେ ତନଖି କରାଯିବ । ସେ ଆହୁରି କହିଲେ ଯେ ରାଜ୍ୟ କର୍ମଚାରୀ-ମାନଂକ ମହଂଗା ଭତ୍ତା ଓ ଅତିରିକ୍ତ ମହଂଗା ଭତ୍ତାଗୁଡ଼ିକୁ କେନ୍ଦ୍ର ସରକାରୀ କର୍ମଚାରୀଂକ ମହଂଗାଭତ୍ତା ପ୍ରଦାନ ସମୟ ସହିତ ସମାନ ରଖି ଦିଆଯାଉଛି ।

ଜୁଡ଼ିସିଆଲ କର୍ମଚାରୀମାନଂକ ଦାବୀଗୁଡ଼ିକ ଯୁକ୍ତିଯୁକ୍ତ ଏବଂ ଏହା ମାନ୍ୟବର ହାଇକୋର୍ଟ ଓ ଓଡ଼ିଶା ସରକାର ଉଭୟ ପରୀକ୍ଷା ନିରୀକ୍ଷାକରି ତୁରନ୍ତ କେତେକ ବିହିତ ପଦକ୍ଷେପ ନେବାପାଇଁ ଅର୍ଥମନ୍ତ୍ରୀ ମତବ୍ୟକ୍ତ କରିଥିଲେ ।

---

## ପରିବେଶ ସମ୍ପର୍କୀୟ ପ୍ରତିଯୋଗିତା

ଓଡ଼ିଶା ଉଚ୍ଚ ମାଧ୍ୟମିକ ପରିଷଦ ଆନୁକୂଲ୍ୟରେ +୨ସ୍ତରର ଛାତ୍ର ଛାତ୍ରୀଂକ ମଧ୍ୟରେ ପରିବେଶ ସୁରକ୍ଷା ପର୍ଯ୍ୟାୟରେ ପ୍ରବଂଧ, ବକ୍ତୃତା, ପ୍ରାଚୀରପତ୍ର ତଥା ବ୍ୟଂଗଚିତ୍ର ଅଂକନ ଓ ଏକାଂକିକା ପ୍ରତିଯୋଗିତାର ଆୟୋଜନ କରାଯାଉଛି । ପ୍ରତିଯୋଗିତାର ପ୍ରତ୍ୟେକ ବିଷୟରେ ୧ମ, ୨ୟ ଓ ୩ୟ ସ୍ଥାନ ଅଧିକାର କରିଥିବା ଛାତ୍ରଛାତ୍ରୀଂକୁ ଗୋଟିଏ ଶିକ୍ଷାବର୍ଷ ପାଇଁ ମାସିକ ଯଥାକ୍ରମେ ୪୦ ଟଂକା, ୩୦ ଟଂକା ଓ ୨୦ ଟଂକା ହିସାବରେ ବୃତ୍ତି ଦେବାର ସ୍ଥିର କରାଯାଇଛି । ଏଥିସହିତ କୃତୀ ଛାତ୍ରଛାତ୍ରୀମାନଂକୁ ପ୍ରମାଣପତ୍ର ମଧ୍ୟ ପ୍ରଦାନ କରାଯିବ । ଏଥିପାଇଁ ଆବଶ୍ୟକ ପଡୁଥିବା ସମସ୍ତ ଅର୍ଥ ରାଜ୍ୟ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ତରଫରୁ ଯୋଗାଇ ଦିଆଯିବ ।

## ପୂର୍ତ୍ତ ବିଭାଗର "ନିର୍ମାଣ ସୌଧ" ବିଭାଗୀୟ ମନ୍ତ୍ରୀଙ୍କଦ୍ଵାରା ଉଦ୍‌ଘାଟିତ

ସ୍ଥାନୀୟ ନବତଳ ବିଶିଷ୍ଟ ବିଭାଗୀୟ ମୁଖ୍ୟ କାର୍ଯ୍ୟାଳୟ ନିକଟରେ ପୂର୍ତ୍ତ ବିଭାଗର ଯନ୍ତ୍ରୀମାନଂକ ଉଦ୍ୟମରେ ୮୫ ଲକ୍ଷ ଟଂକା ବ୍ୟୟରେ ନିର୍ମିତ ନିର୍ମାଣ ସୌଧର ପ୍ରଥମ ପର୍ଯ୍ୟାୟ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଯାଇଛି । ତ୍ରିତଳ ବିଶିଷ୍ଟ ଏହି ପ୍ରଥମ ସୌଧକୁ ବିଭାଗୀୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତକୁମାର ବିଶ୍ଵାଳ ସଂପ୍ରତି ଉଦ୍‌ଘାଟନ କରିଛନ୍ତି । କୌଣସି କଂଟ୍ରାକ୍ଟର ସାହାଯ୍ୟ ନନେଇ ସଂପୃକ୍ତ ଯନ୍ତ୍ରୀମାନେ ମାତ୍ର ୧ବର୍ଷ ମଧ୍ୟରେ ଏହାର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିବା ଏକ ଉଲ୍ଲେଖନୀୟ ବିଷୟ ।

ପ୍ରାୟ ୫୭ ହଜାର ବର୍ଗଫୁଟ ଆୟତନରେ ଏହି ସୌଧ ୧୪୦ଟି କଂକ୍ରିଟ ସ୍ତମ୍ଭ ଉପରେ ନିର୍ମିତ ହୋଇଛି ଏବଂ ଏଥିରେ ଥିବା "ବିମ" ଗୁଡ଼ିକର ସର୍ବମୋଟ ଦୈର୍ଘ୍ୟହେବ ୩'୬୫ କି.ମି. ଏହାର ନିର୍ମାଣ ଫଳରେ ୧ଲକ୍ଷ ୨୫ ହଜାର ଶ୍ରମ ଦିବସ ସୃଷ୍ଟି ହୋଇ ପାରିଛି । ବିଭାଗୀୟ ମନ୍ତ୍ରୀ, ଶାସନ ସଚିବ ମୁଖ୍ୟ ଯନ୍ତ୍ରୀ

ଏବଂ ମୁଖ୍ୟ ଯନ୍ତ୍ରୀମାନଂକ ସମେତ ଭୁବନେଶ୍ୱରସ୍ଥ ପଦସ୍ଥ ଯନ୍ତ୍ରୀମାନଂକ କାର୍ଯ୍ୟାଳୟସବୁ ଏହି ସୌଧକୁ ସ୍ଥାନାନ୍ତରିତ ହେବ ।

ଏ ଉପଲକ୍ଷେ ସେଠାରେ ଆୟୋଜିତ ଏକ ଜନସମାବେଶରେ ମୁଖ୍ୟ ଅତିଥିରୂପେ ଉଦ୍‌ବୋଧନଦେଇ ଶ୍ରୀ ବିଶ୍ୱାଳ କହିଲେ ଯେ ନୂଆଦିଲ୍ଲୀରେ କେଂଦ୍ର ସରକାରଂକ ଥିବା ରେଳବାଇ ଭବନ ଓ କୃଷିଭବନ ପରି ବିଭିନ୍ନ ମନ୍ତ୍ରଣାଳୟର ସ୍ୱତନ୍ତ୍ର ଭବନଗୁଡ଼ିକକୁ ଦୃଷ୍ଟିରେ ରଖି ଏହି ସୌଧର ପରିକଳ୍ପନା କରାଯାଇଛି । ଏହା ଫଳରେ ପୂର୍ତ୍ତ ବିଭାଗର ପ୍ରଶାସନିକ ତତ୍ପରତା ଓ କାର୍ଯ୍ୟଦକ୍ଷତା ଅଧିକ ବୃଦ୍ଧି ପାଇବା ସଂଗେ ସଂଗେ ରାଜ୍ୟର ବିଭିନ୍ନ ନିର୍ମାଣ ପ୍ରକଳ୍ପକୁ ତ୍ୱରାନିତ କରାଯାଇ ପାରିବ ବୋଲି ସେ ଆଶା ପ୍ରକାଶ କରିଥିଲେ । ସରକାରଂକ ବିଗତ ସାଢ଼େ ଚାରି ବର୍ଷର ସାଫଲ୍ୟ ବିଷୟ ଉଲ୍ଲେଖକରି ସେ କହିଲେ ଯେ ପୂର୍ତ୍ତ-ବିଭାଗର ଯନ୍ତ୍ରୀମାନଂକ ସମେତ ସରକାରୀ କର୍ମଚାରୀମାନେ ସରକାରଂକ ସହିତ ସଂପୂର୍ଣ୍ଣ ସହଯୋଗ କରିଥିବା ଯୋଗୁଁ ଏପରି ସମ୍ଭବ ହୋଇପାରିଛି । ପ୍ରତ୍ୟେକ କ୍ଷେତ୍ରରେ ସରକାରୀ କର୍ମଚାରୀକଂର ନିଷ୍ଠାପର ଉଦ୍ୟମ ଓ ନିର୍ଭୀକତା ଅଭିନଂଦନୀୟ ବୋଲି ସେ ଭାଷଣ ପ୍ରସଂଗରେ ସୂଚନା ଦେଇଥିଲେ ।

ବିଦାୟୀ ଶାସନ ସଚିବ ଶ୍ରୀ ପ୍ରହଲ୍ଲାଦ ପଟ୍ଟନାୟକଂକ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସଭାରେ ରାସ୍ତାନିର୍ମାଣ ମୁଖ୍ୟଯନ୍ତ୍ରୀ ଶ୍ରୀ ଭୁବନମୋହନ ଦାସ ପ୍ରାରମ୍ଭିକ ସୂଚନା ଦେଇଥିଲେ । ଶ୍ରୀ ପଟ୍ଟନାୟକ କହିଲେ ଯେ ୫ମ ଓ ୬ଷ୍ଠ ଯୋଜନା ତୁଳନାରେ ୭ମ ଯୋଜନା ପାଇଁ ରାସ୍ତାଘାଟ ଓ କୋଠାବାଡ଼ି ଇତ୍ୟାଦ ନିର୍ମାଣ ବାବଦରେ ଅଧିକ ଅର୍ଥ ବ୍ୟବସ୍ଥା କରାଯାଇଛି । ଏହି ଉତ୍ସବରେ ଅର୍ଥ ବଭାଗ ଶାସନ ସଚିବ ଶ୍ରୀ ଆର. କେ. ଭୁଜବଳଙ୍କ ସମେତ ବହୁ ପଦସ୍ଥ ଅଫିସର ଓ ବିଭାଗୀୟ ଯନ୍ତ୍ରୀ ଯୋଗ ଦେଇଥିଲେ । ଶେଷରେ ଏସ୍. ଇ. ଶ୍ରୀ ବଂଶୀଧର ଷଡ଼ଂଗୀ ଧନ୍ୟବାଦ ଅର୍ପଣ କରିଥିଲେ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପୂର୍ତ୍ତାଂଗ ସୌଧର ନିର୍ମାଣ ପାଇଁ ୩ କୋଟି ୫୦ ଲକ୍ଷ ଟଂକା ବ୍ୟୟ ଅଟକଳ କରାଯାଇଛି ଏବଂ ପର୍ଯ୍ୟାୟକ୍ରମେ ସମୁଦାୟ ୧୬ ମହଲା ନିର୍ମାଣ କରିବାକୁ ପରିକଳ୍ପନା ରହିଛି । ନିର୍ମାଣର ଦାୟିତ୍ୱ ସ୍ଥାନୀୟ ୨ ନମ୍ବର କନ୍‌ଷ୍ଟ୍ରକ୍‌ସନ ଡ଼ିଭିଜନ ଉପରେ ନ୍ୟସ୍ତ କରାଯାଇଛି ।

— —

## ରାଜ୍ୟ ମୁଖ୍ୟ ଶାସନ ସଚିବଙ୍କ ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ଅଫିସରମାନଙ୍କୁ ଉଦ୍‌ବୋଧନ

ସଂପ୍ରତି ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ଜ୍ଞାନ ଚାନ୍ଦ, ଆଇ. ଏ. ଏସ୍. ତଥା ଦୁର୍ନୀତି ନିବାରଣ ବିଭାଗ ଶାସନ ସଚିବ, ଦୁର୍ନୀତି ନିବାରଣ ବିଭାଗ ନିର୍ଦ୍ଦେଶକ କଟକସ୍ଥ କାର୍ଯ୍ୟାଳୟଠାରେ ଦୁର୍ନୀତି ନିବାରଣ ବିଭାଗ କର୍ମଚାରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ଦୁର୍ନୀତିକୁ ମୂଳପୋଛ କରିବା ଦିଗରେ ସରକାରଙ୍କ ନୀତିକୁ ସେ ବିଶଦ ଭାବେ ବୁଝାଇଥିଲେ ଏବଂ ଦୁର୍ନୀତିକୁ କିପରି ଭାବେ ରୋକାଯାଇ ପାରିବ, ସେ ବିଷୟରେ ଗୁରୁତ୍ୱ ଦେଇଥିଲେ । ବର୍ତ୍ତମାନ ରାଜ୍ୟସରକାରଙ୍କ ଯେଉଁସବୁ ଯୋଜନାରେ ବହୁତ ଅର୍ଥ ବିନିଯୋଗ ହେଉଛି, ସେସବୁ ବିଭାଗ ପ୍ରତି ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ତୀକ୍ଷ୍ଣ ଦୃଷ୍ଟି ରଖିଥିବା ବିଷୟକୁ ସେ ପ୍ରଶଂସା କରିଥିଲେ । ଅର୍ଥନୈତିକ ଗ୍ରାମ୍ୟ ପୁନର୍ବସତି ଯୋଜନା ଓ ମିଳିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ହେଉଥିବା ଦୁର୍ନୀତିକୁ ଧରିବା ଏବଂ ରୋକିବାରେ ରାଜ୍ୟ ଦୁର୍ନୀତି ନିବାରଣ ବିଭାଗର ଉଦ୍ୟମକୁ ସେ ପ୍ରଶଂସା କରିଥିଲେ । ଦୁର୍ନୀତି ଧରାଯିବା ଓ ରୋକାଯିବା ସୁଫଳ ଯେପରି ରାଜ୍ୟର ଦୁର୍ବଳ ଶ୍ରେଣୀ ଲୋକମାନେ ଉପଲବ୍ଧି କରିପାରିବେ, ସେ ବିଷୟ ସେ ବୁଝାଇଥିଲେ । ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କୁ ଧରିବା ସଂଗେ ସଂଗେ ସାଧୁ କର୍ମ-ଚାରୀମାନଙ୍କର ନିରାପତ୍ତା ରକ୍ଷା କରିବା ଦ୍ୱାରା ଲୋକସେବାରତ କର୍ମଚାରୀମାନଙ୍କ ନୈତିକ ମାନ ବୃଦ୍ଧି କରାଯାଇ ପାରିବ ବୋଲି ସେ କହିଥିଲେ । ସେ ପୁଣି କହିଥିଲେ ଯେ କାର୍ଯ୍ୟ ସଂପାଦନ କରିବା ବେଳେ ଦୁର୍ନୀତି ନିବାରଣ କର୍ମଚାରୀ-ମାନେ ସଂପୂର୍ଣ୍ଣ ଭାବେ ନିରପେକ୍ଷ ହେବା ଉଚିତ । ଦୁର୍ନୀତି ନିବାରଣ ବିଭାଗ ଅଫିସରମାନଙ୍କୁ ଜନସେବା କାର୍ଯ୍ୟରେ ସଚ୍ଚୋଟତା ରକ୍ଷା କରିବାକୁ ଯାଇ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥାଏ । କିନ୍ତୁ ସେମାନେ ସମାଜର ସ୍ୱାର୍ଥ ଦୃଷ୍ଟିରୁ ଗୁରୁ ଦାୟିତ୍ୱ ସଂପାଦନ କରୁଥିବା ହେତୁ ଆତ୍ମସନ୍ତୋଷ ଲଭ କରିବା ଉଚିତ । ସେ ଦୁର୍ନୀତି ନିବାରଣ ବିଭାଗ ଦ୍ୱାରା କେତେକ ସଂଗଠିତ ଅପରାଧ, ଯଥା: ବିହନ କିଣାରେ ହେରଫେର ଘଟଣା ସମେତ ଅନ୍ୟ କେତେକ ସାଂଘାତିକ ଅର୍ଥନୈତିକ ଅପରାଧମାନ ଧରିବା ପ୍ରଚେଷ୍ଟାକୁ ଭୂୟସୀ ପ୍ରଶଂସା କରିଥିଲେ । ଆସନ୍ତା ବର୍ଷମାନଙ୍କରେ ସରକାରୀ ଉଦ୍ୟୋଗମାନଙ୍କରେ ବହୁ ଅର୍ଥ ବିନିଯୋଗ ହେବାକୁ ଥିବା ଦୃଷ୍ଟିରୁ ଦୁର୍ନୀତି ନିବାରଣ ବିଭାଗକୁ ଅଧିକ ଦାୟିତ୍ୱ ସଂପନ୍ନ ଭୂମିକା ଗ୍ରହଣ କରିବାକୁ ପଡ଼ିବ । ବିଗତ ୨୦ ବର୍ଷ ତୁଳନାରେ ଓଡ଼ିଶା ରାଜ୍ୟ ପାଇଁ ଉଦ୍ଦିଷ୍ଟ ୭ମ ପଂଚବାର୍ଷିକ ଯୋଜନା ସମ୍ବଳ ବହୁଗୁଣରେ ବୃଦ୍ଧି ପାଇଛି । ଏଥିପାଇଁ ରାଜ୍ୟ ସଚିବାଳୟର ପ୍ରତ୍ୟେକ ବିଭାଗ ଏବଂ ସରକାରୀ ମୁଖ୍ୟ ଦପ୍ତରମାନଙ୍କର ରାଜ୍ୟ ଦୁର୍ନୀତି ନିବାରଣ ବିଭାଗକୁ ସକ୍ରିୟ ସହଯୋଗ କରିବା ପାଇଁ ଜଣେ ଜଣେ ଦୁର୍ନୀତି ନିବାରଣ ଅଫିସର ରଖା ଯାଇଛି ।

ରାଜ୍ୟ ଦୁର୍ନୀତି ନିବାରଣ ବିଭାଗର ଆଇ. ଜି. ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତି, ଆଇ. ପି. ଏସ୍. ଦୁର୍ନୀତି ନିବାରଣ ବିଭାଗର କାର୍ଯ୍ୟାବଳୀର ଏକ ବିଶଦ ବିବରଣୀ ଉପସ୍ଥାପିତ କରିଥିଲେ । ବିଭିନ୍ନ ବାଧାବିଘ୍ନ ସତ୍ତ୍ୱେ ରାଜ୍ୟ ଦୁର୍ନୀତି ନିବାରଣ ବିଭାଗର କର୍ମଚାରୀବୃନ୍ଦ ଅସାଧୁ ସରକାରୀ କର୍ମଚାରୀମାନଙ୍କୁ ଦଣ୍ଡିତ କରିବା ସଂଗେ ସଂଗେ ଜଂଗଲ ଅପରାଧମାନଙ୍କର ସଂଖ୍ୟା ଦ୍ରୁତ ହ୍ରାସ କରାଇ ପାରିଛନ୍ତି ବୋଲି କହିଥିଲେ । ଆଉ ମଧ୍ୟ ସେ ପ୍ରକାଶ କରିଥିଲେ ଯେ ନାନାବିଧ ଟିକସ ଫାର୍କି ଘଟଣାମାନ ଧରି ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ଅଫିସରମାନେ ପ୍ରାୟ ୧୫ ରୁ ୨୦ କୋଟି ଟଙ୍କା ପର୍ଯ୍ୟନ୍ତ ରାଜକୋଷକୁ ଦେଇଛନ୍ତି ।

ଦୁର୍ନୀତି ନିବାରଣ ବିଭାଗର ସ୍ୱତନ୍ତ୍ର ଆଇ. ଜି. ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ, ଆଇ. ପି. ଏସ୍. ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ ।

# ପୁଷ୍ପ ପ୍ରଦର୍ଶନୀ

ଜାନୁଆରୀ ମାସ ୧୨ ତାରିଖ ଦିନ ରାଜ୍ୟ ସୂଚନାଭବନଠାରେ ୧୯୮୫ ମସିହା ପାଇଁ ଏକ ପୁଷ୍ପ ପ୍ରଦର୍ଶନୀ ଅନୁଷ୍ଠିତ ହେବାର ସ୍ଥିର କରାଯାଇଛି । ଏହି ପ୍ରଦର୍ଶନୀ ଓଡ଼ିଶା ଆଳଂକାରିକ ଉଦ୍ୟାନ-ବିଜ୍ଞାନ ସମିତି ଏବଂ ରାଜ୍ୟ ବିଜ୍ଞାନ କାରିଗରୀ ଓ ପରିବେଶ ବିଭାଗସ୍ଥ ଭୁବନେଶ୍ୱରସ୍ଥ ଉଦ୍ଭିଦ ସମ୍ପଦ କେନ୍ଦ୍ର 'ଏକାମ୍ର କାନନ' ର ମିଳିତ ଉଦ୍ୟମରେ ଆୟୋଜନ କରାଯାଇଛି । ଏଥି ସହିତ କଟକ ଓ ଭୁବନେଶ୍ୱରସ୍ଥ ପୁଷ୍ପ ଉଦ୍ୟାନଗୁଡ଼ିକର ପ୍ରତିଯୋଗିତା ମଧ୍ୟ ଅନୁଷ୍ଠିତ ହେବ । ପୁଷ୍ପ ପ୍ରଦର୍ଶନୀ ଓ ପୁଷ୍ପ ଉଦ୍ୟାନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବାକୁ ଇଚ୍ଛୁକ ବ୍ୟକ୍ତିମାନେ ଏ ସଂପର୍କରେ ସବିଶେଷ ବିବରଣୀ ଭୁବନେଶ୍ୱର ନର୍ସରୀ ଦାୟିତ୍ୱରେ ଥିବା ସହକାରୀ ନିର୍ଦ୍ଦେଶକ ତଥା ସମିତିର ଯୁଗ୍ମ ସଂପାଦକଙ୍କଠାରୁ ସଂଗ୍ରହ କରିପାରିବେ

## ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦିବସରେ ରାଜ୍ୟପାଳଙ୍କ ଉଦ୍‌ବୋଧନ

ଓଡ଼ିଶାରୁ ଦାରିଦ୍ର୍ୟ ଓ ହୀନମନ୍ୟତା ଦୂର କରି ଏହାକୁ ଏକ ଅଗ୍ରଗଣ୍ୟ ରାଜ୍ୟରେ ପରିଣତ କରିବାକୁ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ ଶିକ୍ଷିତ ଯୁବସଂପ୍ରଦାୟକୁ ଆହ୍ୱାନ ଦେଇଛନ୍ତି ।

ଶ୍ରୀ ପାଣ୍ଡେ ଆଜ ଭୁବନେଶ୍ୱର ବାଣୀବିହାରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟର ୪୨ତମ ପ୍ରତିଷ୍ଠା ଦିବସରେ ପୌରୋହିତ୍ୟ କରି କହିଲେ ଯେ ଓଡ଼ିଶାର ଛାତ୍ରସମାଜ ସର୍ବଭାରତୀୟ ସ୍ତରରେ ବିଶେଷ କୃତିତ୍ୱ ଅର୍ଜନ କରୁଛନ୍ତି । ଓଡ଼ିଶାବାସୀଙ୍କ ପକ୍ଷେ ଏହା ଗର୍ବ ଓ ଗୌରବର ବିଷୟ । ବିପୁଳ ପ୍ରାକୃତିକ ସଂପଦ ସତ୍ତ୍ୱେ ଓଡ଼ିଶା ଅନ୍ୟ ରାଜ୍ୟ ତୁଳନାରେ ଅନଗ୍ରସର ଅବସ୍ଥାରେ ରହିବା ସମୀଚିନ ନୁହେଁ । ଛାତ୍ର ଓ ଯୁବସମାଜ ଦାରିଦ୍ର୍ୟ ଦୂର କରିବା ପାଇଁ ସଂକଳ୍ପବଦ୍ଧ ହେବା ଆବଶ୍ୟକ । ରାଜ୍ୟପାଳ କହିଲେ ଯେ ଦେଶରୁ ଜାତିଆଣ ମନୋଭାବ ଭଳି ସଂକୀର୍ଣ୍ଣ ପରଂପରା ଭଙ୍ଗ କରିବା ପାଇଁ ଛାତ୍ରସମାଜ ବଦ୍ଧପରିକର ହେବା ଆବଶ୍ୟକ । ଦେଶ, ଦେଶବାସୀ ଓ ସର୍ବସାଧାରଣଙ୍କ ସଂପତ୍ତିକୁ ଭଲପାଇବାପାଇଁ ଛାତ୍ରମା ଶିକ୍ଷା ଦିଆଯିବା ଉଚିତ୍ । ଦେଶବାସୀ ଭାରତବର୍ଷକୁ ନିଜ ଜନ୍ମଭୂମି ନିମନ୍ତେ ଓ ସମସ୍ତେ ଏହାର ଅଧିବାସୀ ବୋଲି ମ କଲେ ଐକ୍ୟ ଓ ସଂହତି ଦୃଢ଼ୀଭୂତ ହେବ ।

ଏହି ଉତ୍ସବରେ ଉତ୍କଳ ବିଶ୍ୱବିଦ୍ୟାଳୟର ଅ କୁଳପତି ଡଃ ଶ୍ରୀନିବାସ ସାହୁ ବିଶ୍ୱବିଦ୍ୟାଳୟର କ୍ରମୋ ଓ ଅଭାବ ଅସୁବିଧା ସଂପର୍କରେ ସୂଚନା ଦେଇ ଛାତ୍ର, ଓ କର୍ମଚାରୀମାନଙ୍କ ସହଯୋଗ ବଳରେ ଅଗ୍ରଗତି ହୋଇଛି ବୋଲି ଦର୍ଶାଇଥିଲେ । ବିଶ୍ୱବିଦ୍ୟାଳୟ ପ୍ର ଦିବସ ଉପଲକ୍ଷେ ଅଧ୍ୟାପକ ବସନ୍ତ କୁମାର ବେ ପୂର୍ବତନ ରେଜିଷ୍ଟ୍ରାର ଶ୍ରୀ ଦୁର୍ଗା ପ୍ରସାଦ ବରାଳ ଓ ପୂର୍ବ ହେଡ୍‌ଆସିଷ୍ଟାଣ୍ଟ ଶ୍ରୀ ସୁରେନ୍ଦ୍ର କୁମାର ପରିଡ଼ା ଓ ଶ୍ରୀ ନନ୍ଦକିଶୋର ଦାଶଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ପ୍ରତିଯୋଗିତାରେ ବିଜୟୀ ଛାତ୍ରଛାତ୍ରୀମାନେ ପୁ ହୋଇଥିଲେ ଓ ଶେଷରେ ପି. ଜି. କାଉନ୍‌ସିଲର ଅ ଶ୍ରୀ ବି. ଏନ୍. ସିହ୍ନା ଧନ୍ୟବାଦ ଅର୍ପଣ କରିଥିଲେ ।

## ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ନଭେମ୍ବର ଶେଷ ୭୯ ହଜାରରୁ ଊର୍ଦ୍ଧ୍ୱ ପରିବାର ଉପକୃତ

ଚଳିତ ଆର୍ଥିକ ବର୍ଷର ନଭେମ୍ବର ଶେଷ ସୁଦ୍ଧା ସମ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଅନୁଯାୟୀ ରାଜ୍ୟର ମୋଟ ହଜାର ୧୫୦ ଟି ପରିବାର ଉପକୃତ ହୋଇଛି ଏ ମଧ୍ୟରେ ୧୬ ହଜାର ୯୬୦ଟି ତଫସିଲ ଜାତି ଓ ୧୯ ହଜାର ୮୯୩ ଟି ତଫସିଲଭୁକ୍ତ ସଂପ୍ର ପରିବାର ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ୨ ଜଣ ରୋଜି ଶ୍ରମିକଙ୍କୁ ଥଇଥାନ ସଙ୍ଗେ ସଙ୍ଗେ ଜାତୀୟ ଗ୍ରା କର୍ମ ସଂସ୍ଥାନ କାର୍ଯ୍ୟକ୍ରମ ଅନୁଯାୟୀ ୫୯ ଲକ୍ଷ ୯୪ ହ ଶ୍ରମ ଦିବସ ସୃଷ୍ଟି କରାଯାଇ ଆର୍ଥିକ ଦୁର୍ବଳ ଶ୍ରେ ଲୋକମାନଙ୍କୁ ଉପାର୍ଜନ ସୁବିଧା ଯୋଗାଇ ଦିଆଯାଇଛି

ନଭେମ୍ବର ଶେଷ ସୁଦ୍ଧା ମୋଟ ୩୨ ହଜାର ୧୦ ତଫସିଲଭୁକ୍ତ ଜାତି ଓ ୪୮ ହଜାର ୫୫୫ ଟି ତଫସି ସଂପ୍ରଦାୟ ପରିବାରଙ୍କୁ ଆର୍ଥିକ ସହାୟତା ଦିଆଯାଇ

ଭାରତରେ ବାସକରୁଥିବା ସ୍ତ୍ରୀ, ପୁରୁଷ, ପ୍ରୌଢ଼ ଓ ଯୁବକ–ଆଦିବାସୀ ହୁଅନ୍ତୁ, ହରିଜନ ହୁଅନ୍ତୁ ବା ଅନୁନ୍ନତ ଜାତି ହୁଅନ୍ତୁ, ଯେ କେହି ଲୋକ ଯେଉଁଠି ଥାଆନ୍ତୁ ନା କାହିଁକି–ନିଜର ହାତମୁଠା ଟାଣ କରିବାର ସାହସ ସମସ୍ତଙ୍କର ଆସିବା ଦରକାର । ତାଙ୍କ ଭିତରେ ସେହି ଶକ୍ତି ଆସିବା ଦରକାର, ଯାହାଦ୍ୱାରା ସେମାନେ ପରିଶ୍ରମ କରି ଦେଶକୁ ଉନ୍ନତ କରି ପାରିବେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ

OGP—MP-VI (I. & P. R.) 115-15,000—27-3-1985



ାରଣତନ୍ତ୍ର ଦିବସରେ ରାଷ୍ଟ୍ରପତିଙ୍କ ଅଭିବାଦନ ଗ୍ରହଣ (ନୂଆଦିଲ୍ଲୀ) REPUBLIC DAY PARADE IN NEWDELHI-196



ତିନି ସେନାବାହିନୀ ମୁଖ୍ୟଙ୍କ ସହ ରାଷ୍ଟ୍ରପତି . PRESIDENT WITH CHIEF OF THE ARMY STAFF, NAVAL STAFF & AIR STAFF — REPUBLIC DAY-19

Licence No. C. R. N. P. 5—Licensed to post



ରାଷ୍ଟ୍ରପତିଙ୍କ ସହ ଜାତୀୟ ସାହସିକତା ପୁରସ୍କାର ବିଜେତା ବର୍ଷ - ୧୯୮୪ .
PRESIDENT WITH THE RESIPIENTS Oi NATIONAL BRAVERY AWARDS - 1984.

